ଓଁ ଜୟ ଗୁରୁ

ଜୟଗୁରୁ ପ୍ରତିଷ୍ଠାନର ସପ୍ତଦଶ ଅବଦାନ

# କଳ୍ପନା କୁଞ୍ଜେ

ଶ୍ରୀ ବିଶ୍ୱନାଥ କର, 'ଦରଦି'

ଲେଖକ :
**ଶ୍ରୀ ବିଶ୍ୱନାଥ କର,** ବି.ଏ., କୋବିଦ 'ଦରଦୀ'
ଚଉଦ୍ୱାର, ଜି: କଟକ

ପ୍ରକାଶକ :
**ଜୟଗୁରୁ ପ୍ରତିଷ୍ଠାନ**
ଚଉଦ୍ୱାର, ଜି: କଟକ

ପ୍ରକାଶକାଳ :
ତା ୧୪ । ୩ । ୬୮, ଦୋଳପୂର୍ଣ୍ଣିମୀ

ପ୍ରଚ୍ଛଦପଟ ଶିଳ୍ପୀ :
**ଶ୍ରୀ ବ୍ରଜବନ୍ଧୁ ମିଶ୍ର**
ରାଜ୍ୟ ପରିବାର ନିୟନ୍ତ୍ରଣ ସଂସ୍ଥା, ଭୁବନେଶ୍ୱର

ମୁଦ୍ରଣ :
**ଗୋସ୍ୱାମୀ ପ୍ରେସ,** କଟକ-୨



ମୂଲ୍ୟ—ଦୁଇଟଙ୍କା

# ଏହି ଲେଖକଙ୍କର ଲେଖନୀ-ନିଃସୃତ

କବିତା :

ବିରହ-ବାନ୍ଧବୀ
ପଲ୍ଲୀ-ପ୍ରୀତି
ତିଳତଣ୍ଡୁଳ
କଳ୍ପନା କୁଞ୍ଜେ

କାବ୍ୟ :

ମିଳନ ମାଧୁରୀ
ସଞ୍ଚର ଶକ୍ତି

ଅନୁବାଦ :

ରତ୍ନରେଣୁ
ଋତୁସଂହାର
ଗୀତ ନିର୍ଝରଣୀ
ଅଞ୍ଜଳି
ମଣିରତ୍ନମାଳା
ହଂସଦୂତ

ସଙ୍ଗୀତ :

ଗୀତଗଣିତ
ଶ୍ରୀକପାଳେଶ୍ୱର ଚଉତିଶା

ଟୀକା ସଂକଳନ :

ସଟୀକ ଯମକରାଜ ଚଉତିଶା

ଭ୍ରମଣ କାହାଣୀ :

ଦେଶଦର୍ଶନ

## ପ୍ରସ୍ତୁତ ପଥେ

କ୍ଷୁଦ୍ରଗଳ୍ପ :—
ମାଟି ନୁହେଁ ମା

ଉପନ୍ୟାସ :—
ଅଭାଗିନୀର ଅଶ୍ରୁ

ଅନୁବାଦ :—
ରଘୁବଂଶ
କୁମାରସମ୍ଭବ
ନଳୋଦୟ

"ତସ୍ମୈ ଶ୍ରୀଗୁରବେ ନମଃ"

ମୋର ସ୍ୱର୍ଗତ ପିତାମହ ତଥା ବାଲ୍ୟଗୁରୁ କୃପାସିନ୍ଧୁ କରଙ୍କ ଉଦ୍ଦେଶ୍ୟ.........

## ଗୋଟିଏ ମିନତି —

ଯୌବନର ପ୍ରାକ୍‌କାଳରେ ବର୍ଷଯାବତ୍ ବିରହ-ବିଧୁର ଜୀବନ ଯାପନ କରିବା ଥିଲା ମୋର ଭାଗ୍ୟଲିପି । ତାହା ସତେ ଯେପରି ଥିଲା ଦୁର୍ନିବାର, ଅଲଂଘ୍ୟ ଓ ଅବଶ୍ୟପାଳନୀୟ । ସେହି ଦୁଃଖ ଲାଘବ କରିବା ଲାଗି କଳ୍ପନା ବଳରେ ପ୍ରିୟାର ମଧୁର ସ୍ମୃତିକୁ ପାଥେୟ କରି ରଚନା କଲି କେତେକ କବିତା ।

ମୋର ପ୍ରଥମ ରଚନା ବିରହ-ବାଇଶୀ (୧୯୫୨)ରେ ପ୍ରକାଶିତ 'କଳ୍ପନା ସୁନ୍ଦରୀ' 'ମାନଭଞ୍ଜନ' 'ପ୍ରଣୟପାଗଳ' 'ରଜପରବେ' 'ସପନ ସୁନ୍ଦରୀ' 'କୁହୁକମୀ' ସାମାନ୍ୟ ପରିବର୍ତ୍ତନ ସହ ଏଥିରେ ସନ୍ନିବେଶିତ । 'ନିବେଦନ' 'ବସନ୍ତ ଆଗମେ' ଓ 'ବିରହୀର ସଂସାର'ର ଚିନ୍ତାଧାରା କେତେକାଂଶରେ ସମାନ ହେଲେ ହେଁ ଭାଷା ଓ ଛନ୍ଦ ସମ୍ପୂର୍ଣ୍ଣ ପୃଥକ୍ । 'ମେଘାଲୋକେ' 'ଯକ୍ଷ ଆରେ ମୁଁ ଯକ୍ଷ' 'କଳ୍ପନା କୁଞ୍ଜେ' ଓ 'ସପ୍ତ-ସ୍ମୃତି' ନୂତନ ରୂପେ ରଚିତ ।

ଆଶା ! ସହୃଦୟ ପାଠକ ପାଠିକା ଏହାକୁ ପାଠ କରି କ୍ଷଣିକ ଆନନ୍ଦ ଉପଲବ୍ଧି କରିବେ ।

ଏ ପ୍ରସଙ୍ଗରେ ପ୍ରସିଦ୍ଧ ଇଂରାଜୀ କବି P. B. Shelleyଙ୍କ ରଚିତ "To a Skylark" ଶୀର୍ଷକ କବିତାର ଅଷ୍ଟାଦଶ ପଦ ମୋର ମନେ ପଡ଼େ ।

"We look before and after
And pine for what is not;
Our sincerest laughter
With some pain is fraught;
Our sweetest songs are those
That tell of saddest thought."

ବିନୟାବନତ
**ଦରଦୀ କବି**

# ପ୍ରତ୍ୟର୍ପଣ

ବର୍ଷ ଅବଧି     ବିରହ ଯାହାର
ହୃଦୟ-ମରୁରେ ମମ,
ଫୁଟାଇ ପାରିଲା     କବିତା-ଉତ୍ସ
"ଓୟେସିସ୍" ଧାରା ସମ;
ସେହି ମୋ ଅଳସକନ୍ୟା,
ସେ ଯେ ମୋ ପ୍ରଣୟ-ବନ୍ୟା;
ପଦତଳେ ଯା' ବିକଶେ ସ୍ୱର୍ଣ୍ଣ-ପଦ୍ମ,
ବର୍ଣ୍ଣେ ସକଳ ସୁଷମାର ସେ ଯେ ସଦ୍ମ;
ସ୍ନିଗ୍ଧ-ମଧୁର     କଳ୍ପନା ଯା'ର
ମୁଗ୍ଧ-ମାନସେ ମୋର,
ଫୁଟାଇଲା ଭାଷା     ମୂକ ଲେଖନୀରେ
ତୁଟାଇ ଦୁଃଖ ଘୋର;
ଯାହାର ଅଙ୍ଗ ସଙ୍ଗ,
ଚିନ୍ତା ମୋ କରେ ଭଙ୍ଗ;
ସେହି ପ୍ରିୟତମା ପତ୍ନୀ "କମଳା" କରେ,
ଅର୍ପିଲି ଏହି ପୁସ୍ତିକା ସ୍ନେହ ଭରେ ॥

ଗୁଣମୁଗ୍ଧ
"ଦରଦୀ"

# ସୂଚୀପତ୍ର



---

# ସମ୍ବେଦନା

ହୃଦୟତୃଣକୁଟୀରେ ଦହ୍ୟମାନେ ସ୍ମରାଗ୍ନୌ
ଉଚିତମନୁଚିତଂ ବା ବେତ୍ତି କଃ ପଣ୍ଡିତୋଽପି ॥
(ଦ୍ୱାତ୍ରିଂଶତ୍‌ପୁତ୍ତଳିକା—କାଳିଦାସ)

ହା ହା ଦେବ ! ସ୍ଫୁଟତି ହୃଦୟଂ ସଂସତେ ଦେହବନ୍ଧଃ
ଶୂନ୍ୟଂ ମନ୍ୟେ ଜଗଦବିରତ ଜ୍ୱାଳମନ୍ତର୍ଜ୍ୱଳାମି ।
ସୀଦନ୍ନନ୍ଧେ ତମସିବିଧୁରେ ମଜ୍ଜତୀବାନ୍ତରାତ୍ମା
ବିଷ୍ୱଙ୍‌ମୋହଃ ସ୍ଥଗୟତି କଥଂ ମନ୍ଦଭାଗ୍ୟଃ କରୋମି ॥
(ଉତ୍ତରରାମଚରିତ—ଭବଭୂତି)।

ପ୍ରିୟପରିରମ୍ଭଣରଭସବଳିତମିବ ପୁଲକିତମତିଦୁରବାପମ୍
ମଦୁରସି କୁଚକଲସଂ ବିନିବେଶୟ ଶୋଷୟ ମନସିଜତାପମ୍ ।
ଅଧରସୁଧାରସମୁପନୟ ଭାମିନି ! ଜୀବୟ ମୃତମିବ ଦାସମ୍
ତ୍ୱୟି ବିନିହିତମନସଂ ବିରହାନଳଦଗ୍ଧବପୁଷମବିଳାସମ୍ ॥
(ଗୀତଗୋବିନ୍ଦ—ଜୟଦେବ)

ରାଜାକୁ ହେବାର ରାଜ୍ୟଭ୍ରଷ୍ଟ
ଯୁବାକୁ ହେବାର ପତ୍ନୀକଷ୍ଟ
ବୋଲେ ଉପଇନ୍ଦ୍ର ଭଞ୍ଜ ବୀରବର
ଏଥୁଁ ବଳି ଆଉ ନାହିଁ କଷ୍ଟ ।
(ରସିକହାରାବଳୀ—ଉପେନ୍ଦ୍ର ଭଞ୍ଜ)

ମଧୁର ମଧୁର ମେରେ ଦୀପକ ଜଲ,
ଯୁଗ ଯୁଗ, ପ୍ରତିଦିନ, ପ୍ରତିକ୍ଷଣ, ପ୍ରତିପଲ,
ପ୍ରିୟତମକା ପଥ ଆଲୋକିତ କର ।
(ପ୍ରତୀକ୍ଷା—ମହାଦେବୀ ବର୍ମା)

ଯାୟ ନଦୀ ଧରେ ତାରାୟ ତାରାୟ,
ଅନିମେଷ ଚୋଖେ ନୀରବେ ଦାଁଡ଼ାୟ,
ପଲ୍ଲବଦଲେ ଶ୍ରାବଣ ଧାରାୟ,
ତୋମାର ବିରହ ବାଜେ ଗୋ ॥
(ଗୀତାଞ୍ଜଳି—ରବୀନ୍ଦ୍ରନାଥ ଠାକୁର)

Sweet to the miser are his glittering heaps,
Sweet to the father is his first born's birth,
But sweet still than this,
Than these, than all,
Is first and passionate love—
It stands alone.
(Lord Byron)

# କାହାଣୀ ନୁହେଁ

ମାଘ ଶୁକ୍ଳ ଏକାଦଶୀର ଜ୍ୟୋତ୍ସ୍ନାବଧୌତ ସନ୍ଧ୍ୟାରେ ଏକ ହତଭାଗ୍ୟ ଶିଶୁ ଜନନୀର କୁକ୍ଷିଗତ ଅନ୍ଧକାର ଭେଦ କରି ମର୍ତ୍ତ୍ୟ-ଭୂମି ସ୍ପର୍ଶ କରେ । ପରିବାରର ସମସ୍ତଙ୍କ ପକ୍ଷରେ ସେ ଏକ ହର୍ଷମୁଖର ସନ୍ଧ୍ୟା । ଜନକ, ଜନନୀ, ଜେଜେ ଓ ଜେଜେ ମାଆଙ୍କ ଗହଣରେ ଶୈଶବ ବେଶ୍ ଆନନ୍ଦରେ କଟେ । ଆଠବର୍ଷ ବୟସରେ ଜେଜେବାପାଙ୍କ ମୃତ୍ୟୁପରେ ଆରମ୍ଭ ହୁଏ ତା'ର ଦୁଃଖମୟ ଜୀବନ ।

୧-୨-୧୯୪୯—ତା'ର ଦାମ୍ପତ୍ୟଜୀବନର ଆରମ୍ଭ ଦିବସ । ପ୍ରାୟ ତିନୋଟି ବର୍ଷର ମଧୁମୟ ଜୀବନ ପରେ ଦେଖା ଦିଏ ଦୁର୍ବାର ବିରହର ଘନଛାୟା । ଧନଗର୍ବିଣୀ ନିଷ୍ଠୁର ଶାଶୁ ତାଙ୍କୁ ଗୃହଜାମାତାରୂପେ ରହିବାକୁ ବାଧ୍ୟ କରେ । ସ୍ୱାଧୀନଚେତା ଯୁବକ ସେଥିରେ ସମ୍ମତ ହୁଏ ନା । ଫଳରେ ଯୁବତୀ ପ୍ରିୟାର ପ୍ରଣୟରୁ ସେ ହୁଏ ବଞ୍ଚିତ; ଏ ପରିକି ରୋଗଶଯ୍ୟାଶାୟିନୀ ପ୍ରିୟାକୁ ଭେଟି ନ ପାରି ସେ ଫେରି ଆସିବାକୁ ବାଧ୍ୟ ହୁଏ ।

ଏକ ପକ୍ଷରେ ରୋଗଶଯ୍ୟାଶାୟିନୀ ଯୁବତୀ ପ୍ରିୟାର କରୁଣ ବିଳାପ ଓ ଅନ୍ୟ ପକ୍ଷରେ ଧନଗର୍ବିଣୀର ମର୍ମବିଦାରକ ଭାଷା "ତୁମେ ତା'କୁ ଦେଖି ପାରିବ ନାହିଁ"—ଯୁବକର ଚିତ୍ତକୁ ଆଲୋଡ଼ନ କରେ । ସେଥିରୁ ରକ୍ଷା ପାଇବା ଲାଗି ସେ ବାଛିନିଏ ଦୁଇଟି ପନ୍ଥା—ହତ୍ୟା ନ ହେଲେ ଆତ୍ମହତ୍ୟା !

୨୩-୧୧-୧୯୫୧—ଜୀବନର ତାହା ଏକ ଶେଷ ନଷ୍ଟତ୍ରିର କାଳରାତ୍ରି । ଏକ ହସ୍ତରେ ଗୀତା ଓ ଅନ୍ୟ ହସ୍ତରେ ପୋଟାସିଅମ୍ ସାଏନାଇଡ୍ । ଗୀତାର ମର୍ମବାଣୀ—ଶରୀର ମର, କ୍ଷଣସ୍ଥାୟୀ କିନ୍ତୁ ଆତ୍ମା ଅମର, ଚିରନ୍ତନ, ଅବଧ୍ୟ । ତେବେ ତା'ର ଅମର ଆତ୍ମାକୁ ସେ ହତ୍ୟା କରିବ କିପରି ? ଠିକ୍ ସେହି ସମୟରେ, ସେହି ଦୁର୍ବଳ ମୁହୂର୍ତ୍ତରେ ତାର ଆଖି ଆଗରେ ଭାସି ଉଠେ ବାଲ୍ୟ-ଗୁରୁଙ୍କର ଜ୍ୟୋତି । ମରଣୋନ୍ମୁଖୀ ଯୁବକ ହୁଏ ବଦ୍ଧିମନ୍ତ, ଆତ୍ମହରା । ତେବେ କ'ଣ ଗୁରୁ ଗୃହାନ୍ତ୍ର, ସେ ଦୁଃସହ ବିରହ ଯନ୍ତ୍ରଣା ସହି ବଞ୍ଚି ରହୁ ?

ବେଶ୍, ତାହାହିଁ ହେଉ । ଗୀତାକୁ ପ୍ରଣିପାତ କରି ସେ ବିଷକୁ ପରିତ୍ୟାଗ କରେ । ଗୁରୁଙ୍କ ପଦ ବନ୍ଦନ କରି ତା'ର ପ୍ରଥମ କବିତା ସେ ରଚନା କରେ "ହେଅ ଗୁରୋ ! ମୋରେ ସାହା । " ଅଳକାପତି କୁବେରର ଶାପରେ ଯକ୍ଷ ବର୍ଷକ ପାଇଁ ରାମଗିରି ପର୍ବତରେ ବିରହବିଧୂର ଜୀବନ ଯାପନ କଲାଭଳି ସେହି ଯୁବକ ବର୍ଷଯାବତ୍ ବିରହ ଯାତନା ଭୋଗକରେ ଓ ତା'ର ହୃଦୟର ପ୍ରେମଫଲ୍‌ଗୁ କବିତାମାଧ୍ୟମରେ ପ୍ରବାହିତ ହୁଏ ।

ସେହି ଯକ୍ଷକଳ୍ପ ଯୁବକର ଦରଦଭରା ପ୍ରାଣର ଗଭୀର ବେଦନାର ପ୍ରତୀକ କଳ୍ପନାକୁଞ୍ଜ ରଚିତ ଏହି କବିତାପୁଞ୍ଜ ରସଗ୍ରାହୀ ପାଠକପାଠିକାମାନଙ୍କର ଅନ୍ତରକୁ କରୁଣରସରେ ରସାଣିତ କରୁ—ଏହାହିଁ ଐକାନ୍ତିକ କାମନା ।

ଦୋଳପୂର୍ଣ୍ଣମୀ
ତା ୧୪ । ୩ । ୬୮

ବିନୟାବନତ
'ଦରଦୀ କବି'

# ନିବେଦନ

ହୁଅ ଗୁରୋ ! ମୋରେ ସାହା,
ଅନ୍ଧକାର ଏ ସଂସାରେ ମୋତେ
ଦେଖାଅ ମୁକ୍ତି-ରାହା ॥

ତୁମ୍ଭ ବିହୁନେ ପିତା ଏ ବଂଶେ
ଅନାଥ ହୋଇଛୁ ଆଜ,
ମନର ସକଳ ଦମ୍ଭ ମୋହର
ଅଚିରେ ଯାଇଛି ଭାଜ । ୧ ।

ଶୈଶବକାଳେ ତୁମ୍ଭ ଗହଣେ
ବଢାଉଥିଲି ମୁଁ ଦିନ,
ସ୍ୱର୍ଗବାସରେ ତୁମ୍ଭର ପିତା
ହୋଇଲି ମୁଁ ଜ୍ଞାନହୀନ । ୨ ।

ଗତ କରେ ମୁଁ ଯେ    ଦୁର୍ଦ୍ଦିନେ ଆଜ
ନାହିଁ ମୋର ସାହା କେହି,
ଦୁଃଖ ମୋହର    ଚିର ସହଚର
ନିବେଦନ କରେ ଏହି । ୩ ।

ଭାଗ୍ୟଚକ୍ର    ଘୂର୍ଣ୍ଣନ ଫଳେ
ନିନ୍ଦା ସତତ ସହେ,
ନବ ଯୌବନେ    ବିରହ-ଦୁଃଖ
ଅନ୍ତର୍ ମୋର ଦହେ । ୪ ।

ଏ ନକପାଳେ    ଦୁଃଖ, ଦୈନ୍ୟ
ଚିରକାଳ ଲାଗି ଖଞ୍ଜା,
ଯୌବନର ମୋ    ମଧୁ ବସନ୍ତେ
ବହେ ବୈଶାଖୀ ଝଞ୍ଜା । ୫ ।

ଶାନ୍ତା କାନ୍ତା    ଅପ୍ସରା ସମ
ସଙ୍ଗିନୀ ମୋର ପାଇ,
ହର୍ଷ ପୁଲକେ    ବଞ୍ଚିଲି କାଳ
ପ୍ରଣୟେ ହୋଇ ମୁଁ ବାଇ । ୬ ।

ହର୍ଷମୟ ସେ ପ୍ରଣୟସିକ୍ତ
ମଧୁର ଜୀବନ ପରେ,
ବାମ ହେଲ ବିଧି ଲିଖିଲ ବିରହ
ଯାତନା ମୋ କପାଳରେ ।୭।

ଯକ୍ଷ ସମ ମୁଁ ବର୍ଷକ ଲଗି
ବିରହ ଦୁଃଖ ଭୋଗେ,
ଜର୍ଜରିତ ଏ ଅନ୍ତର ମୋର
ପ୍ରିୟାର ବିରହ ଯୋଗେ ।୮।

ତୁଟିଛି ମୋହର ପ୍ରେମ ବନ୍ଧନ
ଛୁଟିଛି ଦୀର୍ଘଶ୍ୱାସ,
ଲୁଟିଛି ଦଇବ ଶାନ୍ତି, ହର୍ଷ
ଉଠିଛି ମୋ ଉଚ୍ଛ୍ୱାସ ।୯।

ବିରୂପା ନଦୀର ଉଭୟ ପାର୍ଶ୍ୱେ
ଚକୋର ଚକୋରୀ ପ୍ରାୟ,
ବିଷାଦଗ୍ରସ୍ତ ଅନ୍ତରେ ଦୁହେଁ
ଯାପୁଁ ଦିବାନିଶି ହାୟ ! ।୧୦।

ସ୍ବର୍ଗେ ରହିଣ ମୁହୂର୍ତ୍ତି ପାଇଁ
ମର୍ତ୍ତ୍ୟେ ଢାଳ ନା ଦୃଷ୍ଟି,
"ବଣି" ଯେ ଲୁମର ଅର୍ଦ୍ଧ ଦଗ୍ଧ
ବ୍ୟର୍ଥ ଦଇବ ସୃଷ୍ଟି । ୧୧ ।

ବାମକରେ ତାର ତୀବ୍ର ଗରଳ
ଦକ୍ଷିଣ କରେ ଗୀତା,
ମୃତ୍ୟୁ ତାହାର କାମ୍ୟ ଯେ ଆଜ
ଜୀବନ ମଣିଛୁ ପିତା । ୧୨ ।

ଜୀବନନାଟିକା ସ୍ପନ୍ଦନ ଆଉ
ଅଳ୍ପ ସମୟ ପରେ,
ସ୍ଥଗିତ ହେବ ହେ ସାନ୍ତ୍ୱନା ବାଣୀ
ଶୁଣାଅ ଆଗମି ଥରେ । ୧୩ ।

ବଞ୍ଚିବ ଅବା ତେଜିବ ପରାଣ
ନ ପାଏ ସେ କିଛି ରାହା,
ଅନ୍ଧାର ତାର ଚୌଦିଗ ଆଜ
ଦେଖାଅ ମୁକ୍ତି ରାହା । ୧୪ ।

———

## ବସନ୍ତ ଆଗମେ

ନବ ବସନ୍ତ ମର୍ତ୍ତ୍ୟେ ଆଗମେ ଆଜି,
ବିରହୀ ମୁଁ ହାୟ ! ଧୈର୍ଯ୍ୟ ମୋ ଯାଏ ଭାଜି ॥
ହର୍ଷିତ ବୁକେ ଦର୍ପକ ଧରାପରେ,
ଦର୍ପ ଦେଖାଇ ସଜନି ! ଆସଇ ଖରେ,
ଦୀର୍ଘ ଦିବସ ରଜନୀ,
କହ କା’ ଗହଣେ ବିତାଇବି ମୁଁ ରେ ସଜନି । ୧ ।

ଭାଠରୂପେ ପିକ ପଞ୍ଚମ ତାନେ ଗାଏ,
ଗୁଞ୍ଜନ ଛଳେ ଅଳି ଆଜି ବୀଣା ବାଏ,
ଚମ୍ପା ଅଶୋକ ମଲ୍ଲୀ
ବକୁଳ, କେତକୀ ପୁଷ୍ପେ ପୂରିତ ପଲ୍ଲୀ । ୨ ।

ଅଶେଷ ଶୋକ ସେ ଅଶୋକ କଳିକା ଦିଏ,
ବିରହ-ପରାଣୁଁ ହର୍ଷ ଛଡ଼ାଇ ନିଏ,
ଶୂନ୍ୟ ମୋ ଦଶଦିଶ
କା' ଆଗେ କହିବ କିଏ ବା କରିବ କିସ ।୩।

ଚମ୍ପକ ମୋର ଚମ୍ପାଗୋରୀର ସ୍ମୃତି,
ମାନସେ ଜଣାଇ ଟଳାଏ ଚିତ୍ତ ଧୃତି,
ଅଳି ସମ ଥାଇ ଦୂରେ
ଚିନ୍ତନ କରେ କେବଳ ଚିତ୍ତ-ପୁରେ ।୪।

ଶୁଭ୍ରବରନା ମଲ୍ଲିକା ଆଜ ଫୁଟେ,
ଦର୍ଶନେ ମୋର ଅନ୍ତରେ କୋହ ଉଠେ,
ସଜନି ! ଗଭରେ କା'ର
ଝଙ୍କିବ ଆଜ ମଲ୍ଲୀ କୁସୁମ ମାଳ ।୫।

ଗୁଞ୍ଜନରତ ଅଳି ତା'ର ପୁରୋଭାଗେ,
ମୃଦୁବାଣୀ କହି ଅଧୀରେ ପ୍ରଣୟ ମାଗେ,
କାହା ପାଶେ ମୃଦୁବାଣୀ
କହିବ ଆଜ ମୁଁ ଅନ୍ତର ହୁଏ ହାଣି ।୬।

ଦର୍ପକ ଫୁଲଧନୁର ତୀକ୍ଷ୍ଣ ଶର,
ସମ ଏ ଆମ୍ର ବକୁଳ ଆଣେ ଗୋ ଡର,
ଅନ୍ତରେ ପୀଡ଼ା ଆଣେ,
ଥରେ ମୋ ଚିତ୍ତ ଦର୍ଶନେ କାମ-ବାଣେ ।୭।

କଣ୍ଟକିତ ସେ ଦୁର୍ଗେ କେତକୀ ରମ୍ଭ,
କମ୍ପାଏ ମୋର ବିରହୀ-ପରାଣେ ସମ୍ଭ !
ଦର୍ଶନେ ତାର ଛଦ,
ଯାପଇ ଦିବସ ଦୁଃଖ ମୁଁ ଅନୁଭବି ।୮।

ଅନ୍ଧ ସମାଜ ବନ୍ଧନମାନ ତେଜି,
ଧନଗର୍ବିଣୀ ସର୍ପିଣୀ କଥା ହେଜି,
ଭ୍ରମର ସମ ମୁଁ ହାସୁ !
ନରେଖି ତୋ ଶୋଭା ସହିତ ଶୀର୍ଣ୍ଣିକାସୁ ।୯।

ମଳୟ ସମୀର ପ୍ରଳୟ ସୃଷ୍ଟି କରେ,
ଅନ୍ତର ମୋର ପରଶି ଯାଏ ଯା ଖରେ,
ତୋହର ଅଙ୍ଗ ସଙ୍ଗ
ବିନୁଁ ସଖି ! ମୋର ଶାନ୍ତ ହୋଇଛି ଭଙ୍ଗ ।୧୦।

ସରସୀରେ ଆଜ ପ୍ରଫୁଟିତ ଗୋ ପଦ୍ମ,
ମର୍ତ୍ତ୍ୟର ସେ ଗୋ ସକଳ ଶୋଭାର ସଦ୍ମ,
ପଦ୍ମିନୀ ବାଳା ତୁହି
ତୋହର ବଦନେ ଅନ୍ଧ ହୋଇଛୁ ମୁହିଁ ।୧୧।

ତାମ୍ରବର୍ଣ୍ଣ ନବ ପଲ୍ଲବ ଶୋହେ,
ଦର୍ଶନେ କହ ଭାବୁକ ଚିତ୍ତ ମୋହେ,
କର-ପଲ୍ଲବ ତୋର
ସ୍ମରଣେ ଲଭେ ମୁଁ ସଜନି ! ଦୁଃଖ ଘୋର ।୧୨।

ରଙ୍ଗଣୀ ଫୁଲ ସମ ତୋ ଅଧର ଶୋଭା
ରକ୍ତିମ ଆଭା ସୁନ୍ଦର ମନଲୋଭା
ମାନସ ପଟଳେ ଭାସେ
ହର୍ଷ ସକଳ ମାନସୁଁ ମୋହର ନାଶେ ।୧୩।

ଶିରୀଷାଙ୍ଗି ରେ ! ତୋହର କୋମଳ ତନୁ
ପାଶୋର ନ ଯିବ କେବେ ହେଁ ମୋହର ମନୁଁ
ଥିବ ସେ ପ୍ରଣୟ- ଡୋର
ଜୀବସଙ୍ଗିନି ! ଜୀବ ଥିବା ଯାଏ ମୋର ।୧୪।

———

# କଳ୍ପନା-ସୁନ୍ଦରୀ

ପୂର୍ଣ୍ଣ କର ଆଶା ମମ କାହିଁକି ଗୋ କଳ୍ପନା-ସୁନ୍ଦରୀ,
ଦରଶନ ମାଗେ ଛବ ଧ୍ୟାନ କଣ୍ଠ ନେତ୍ରେ ମୋର ଭରି;
ଆଗମିଲ ଏ ଧରାରେ ଅୟି ପ୍ରିୟତମା !
ଦରଶି କଣ୍ଠରେ ସତେ ଦେଇ ଗଲ କ୍ଷମା,
ଆସ ଗୋ ପରାଣ ସାଥୀ,
ଯିବା ନବ ହର୍ଷେ ମାତି;
ମୁକ୍ତ ହେବେ,
ସଗୌରବେ ॥୧॥

ଭୁଜେ ଭୁଜ ଦିଅ ଛନ୍ଦ ପ୍ରେମପାଶେ କର ଗୋ ବନ୍ଧନ,
ମଧୁମୟ ସ୍ପର୍ଶେ ତବ ଧନ୍ୟ ମଣେ ଆଜ ମୁଁ ଜୀବନ;
କିନ୍ତୁ ହାୟ ! ଗଲ କେତଣେ ନ ପାରିଲି ଜାଣି;
ଆଶାସୌଧ କରି ଚୂର୍ଣ୍ଣ କାହିଁ ଗଲ ରାଣି !
ଚଉଦିଗ ଶୂନ୍ୟ ମଣେ,
ଶିଥିଳ ମୋ ତନୁ କ୍ଷଣେ;
ବାରେ ଆସ,
ମୋର ପାଶ ॥୨॥

ଉନ୍ମାଦ ମୁଁ ? ଶୂନ୍ୟ ପୁରେ ଦେଖେ ମୋର ମାନସୀ ମୂରତି
ଉଭା ମୋର ପୁରୋଭାଗେ ସ୍ମିତ ହାସେ ଆସଇ ମୋ କତି;
ନୟନ-ଅପାଙ୍ଗେ ମୋରେ କରି ବିଚଳିତ,
ହୃଦେ ହୃଦ ଛନ୍ଦିବାକୁ ଦିଅଇ ଇଙ୍ଗିତ,
ସମ୍ମୁଖେ ମୋ ଶୂନ୍ୟ ଏବେ !
ପ୍ରିୟା ଅନ୍ତର୍ହିତା ତେବେ ?
ଏ କି ମାୟା !
ନୁହେଁ କାୟା !! ॥୩॥

ଏ କି ଶୁଣେ କର୍ଣ୍ଣେ ମମ ଶୂନ୍ୟ ଗୃହେ ବଲ୍ଲକୀ-ନିକ୍ୱଣ,
ପ୍ରତେ ହୁଏ ସତେ ଅବା ମାନସୀର ମଧୁର ଗୁଞ୍ଜନ;
ଅଛୁ କି ମାନସପଟେ ଏ ଦୀନ ପ୍ରାର୍ଥନା,
ମଣ୍ଡି ମୋର ଶୂନ୍ୟ ଅଙ୍କ ହେବ ବରବରନା;
ଆଲିଙ୍ଗିଣ ଥରେ ମୋତେ,
ସାର୍ଥକ କରିବ ଗୀତେ;
ଆସ ହେଳେ,
କ୍ରୀଡ଼ା ଖେଳେ ॥୭॥

ଏହି ଯେ ସମ୍ମୁଖେ ମମ ମାନସୀ ଆସଇ ଚଳି ଚଳି,
ସବୁଜମା ଧରାପରେ ସେ କି ଅବା ପ୍ରସ୍ଫୁଟିତ କଳି;
ରକ୍ତିମ ଅଧରେ ତାର ସ୍ମିତ ହାସ ଫୁଟେ,
ନୟନ-ଅପାଙ୍ଗ ହାସ୍ୟ ଚିତ୍ତ ମୋର ଲୁଟେ;
ବକ୍ଷେ ତା ଜଡ଼ାଇ ବକ୍ଷ,
ଲିହି ଗଣ୍ଡେ ଚୁମ୍ବି ଲକ୍ଷ;
ହବାରନ୍ତି,
ପ୍ରେମେ ମାତି ॥୮॥

ଶୂନ୍ୟ ଲାଗେ ବକ୍ଷ ମମ କାହିଁ ମୋର କଳ୍ପନା-ସୁନ୍ଦରୀ,
ନିଃଶେଷିବା ପୂର୍ବୁଁ ତାର ମୁଖୁଁ ମଧୁ ଗଲା ଅପସରି;
ହରନ୍ତି ମୋ ସୁଖ-ସ୍ୱପ୍ନ ରୂକ୍ଷ ବାସ୍ତବତା,
ଦରଦୀ ପରାଣେ ମୋର ଦେଇ ଗୁରୁବ୍ୟଥା;
ନ ଲୋଡ଼େ ବାସ୍ତବ ରାଜ,
କଳ୍ପନାରେ ଗଢ଼େଁ ତାଜ;
ନିରୁପାୟ
ମୁଁ ଯେ ହାୟ ! ॥୭॥

---

ହିନ୍ଦୀ ଚଳଚ୍ଚିତ୍ର "ନଜମାନ୍" ଛାୟାରେ ରଚିତ ।

# ମାନଭଞ୍ଜନ

ଅୟି ମାନମୟି !
କହ ମଧୁବାଣୀ
ଛୁଟାଅ ମୋ ମନବ୍ୟଥା,
ଦହ ଦଏ ପ୍ରାଣ
ସହ ରେ ! ଅନଙ୍ଗ
ବହ ମନେ ନିଷ୍ଠୁରତା
ରେ ଗୋର !
ମହୀ ପରେ ଅଛି କେ ତୋ ସର,
ରହ ମଉନେ ବୁହାଉ ବାର ॥ ୧ ।

ମୁଞ୍ଚ ମନୁଁ ମାନ
କୁଞ୍ଚିତକେଶୀ ରେ !
କହ ସୁଧାସିଞ୍ଚା ବାଣୀ,
ବଞ୍ଚିତ ନ କର
କଞ୍ଚିତେ ତୋ ପ୍ରେମୁଁ
ଚଞ୍ଚଳାକ୍ଷୀ ଚନ୍ଦ୍ରାନନୀ,
ରେ ସଖି !
ଘଞ୍ଚ କୁଚୁଁ ଦିଅ ବାସ ଫେଇ,
ପଞ୍ଚ ବାଣେ କାମ ଦିଏ ଦହି ॥ ୨ ॥

ତୋଳ ବାରେ ମଥା
ଷୋଳବର୍ଷୀ ରେ !
ଭୋଳ ହୁଅ ପ୍ରେମେ ମୋର,
କୋଳାଗ୍ରତ କରି
ଦୋଳାଇ ମୋ ଅଙ୍କେ
ଗୃଳବି ଉରଜେ କର,
ରେ ଧନି !
ଗୋଳା ଚନ୍ଦନେ ଚର୍ଚ୍ଚିବି ପୁଣି
ତୋଳା ଟେକ ମୋ ଅଭିମାନିନୀ ॥ ୩ ॥

ପଙ୍କଜନୟନା

ମୋ ଅଙ୍କ ପଲଙ୍କେ

ଶଙ୍କା ତେଜି ବସ ତୁ ରେ !

ଶଙ୍କର-ଅରିର

ଟଙ୍କାରଇ ବାଣ

ଢାଙ୍କି ରଖ ପୀନ ଉରେ,

ରେ ବାଳା !

ରଙ୍କରତନ ମୋ ଗଳାମାଳା,

ଡଙ୍କା ବାଜେ ଏ ଦୁନିଆସାରା ॥ ୪ ॥

ନାଗରତନ ରେ !

ଘାର ହୁଏ ଦୁଃଖେ

ପାର କର ଲାଜ ତେଜି,

ଠାର ନେତ୍ରେ ବାରେ

ତାର ପାରୁ ହେଲେ

ଭାର କଙ୍କଣ ମୋ ହେଜି,

ରେ ଧନ !

ଶୁଭ-ଚକ୍ଷୁ ମିଳନେ ମୋ ମନ,

ବାରି ନେତ୍ରୁଁ କରେ ବରଷଣ ॥ ୫ ॥

ଦେଖ ଗୋ ମାନିନି !
ପିକ କୁହୁ ତାନେ
ମୁଖରିତ ଚଉକନ୍ତି,
ଦୁଃଖ ମୋର ହର
ସୁଖ ଭୁ ବିତର
ରଖ ମୋ ନମ୍ର ବିନତି,
ରେ ଗୋରି !
ଦିକ ମାନସୁଁ ହର ମୋହର,
ଅକପଟ ଶତ୍ରୁ ଯେ ତୋହର ॥ ୬ ॥

---

# ପ୍ରଣୟ-ପାଗଳ

କାହୁଁ ଭାସି ଆସେ ମୋ ପ୍ରିୟାସ୍ୱର,
ଶୁହୁଁ ଶୁହୁଁ ଥରେ ମୋ କଳେବର,
ଝାଉଁଳିଛି ସରଜକଞ୍ଜ ବଦନ,
ଧାଉଁଛି ଶିଖରେ ଡାକ ବନ୍ଧନ,
ଘାଉଁରେ ମୋହର ମଥା,
ଦାଉଁ ଦାଉଁ ପଡ଼େ            ଦରଶି ସ୍ମୃତି ମୋ
ସୁମରେ ଅଶାନ୍ତ କଥା ॥ ୧ ॥

ଧରଣୀଙ୍କୁ ପ୍ରେମେ ଡାକେ ଆକାଶ,
ପୀରତି ଆଶାରେ ଯିବାକୁ ପାଶ,
ବରତ ନହୁଏ ପ୍ରେମିକା ବିନା,
କରତ ଦିଏ ସେ ହୃଦୟ ଚିନା,
ସୁରତି଼ଲଳସୀ ପ୍ରିୟା,
ମୂରତି ତୋହର ନାଚେ ନେତ୍ରେ ମୋର
ବିଚଳିତ ଚିତ୍ତ ହିଆ ॥ ୨ ॥

କାୟା ତ ପ୍ରିୟାର ରାସିଲ ନିଆଁ,
ଛାୟା ରୂପେ ଡାକେ ତା ଆତ୍ମା କିଆଁ,
ଜାୟା ଭବେ ତୋଷିବାକୁ ମୋ ମନ,
ମାୟା ରଚି ନଭୁଁ ଆସେ ବଦନ,
ଯାୟାହ୍ନ ସମୀର ସାଥେ,
ବାୟା କରେ ମୋତେ ପ୍ରଣୟ ଆହ୍ୱାନ
ଆଜ ଏ ଜ୍ୟୋତ୍ସ୍ନା ରାତେ ॥ ୩ ॥

ଅଙ୍ଗଭଙ୍ଗୀ ଛଳେ ମୋ ହୃଦ-ରାଣୀ
ରଙ୍ଗରସ ଆଶେ ଡାକେ ଗୃହାଣି,
ଚଙ୍ଗ ଚଙ୍ଗ ଭାବୁ ନ ପାରେ ଜାଣି
ଥଙ୍ଗ ଥଙ୍ଗ କଣ୍ଠୁଁ ନ ଫୁଟେ ବାଣୀ,
ସଙ୍ଗସୁଖ ଭାଳି ମନେ,
ଭଙ୍ଗ କରେ ମୋର ଭାବନା ସକଳ
ପ୍ରେମ-ଗୀତି ଗାଇ କ୍ଷଣେ ॥ ୪ ॥

କଣ୍ଢେଇ ଖେଳ କି ଗଲ୍ ପାଶୋର,
ଝୁଣ୍ଟେ କେଶେ ଚଳ ପ୍ରେୟସୀ ମୋର,
ଖଣ୍ଡେ ମୋ ବିଷାଦ ତୋ ଚନ୍ଦ୍ରମୁହଁ,
ଗଣ୍ଡେ କିଆଁ ଡାକୁ ସଜନ ! ଲୁହ,
ଦଣ୍ଡେ ରହ ପ୍ରାଣସଖି,
ମଣ୍ଡେ ମୁଁ ଏ ଅଙ୍କ ତୋ ତନୁସମ୍ଭାରେ
ତୋ ବକ୍ଷେ ମୋ ବକ୍ଷ ରଖି ॥ ୫ ॥

ରଞ୍ଜୁଥିଲୁ ମନ ପ୍ରଣୟ ଦାନେ,
ଗଞ୍ଜୁଛୁ ଆଜ ମୋ ବ୍ୟର୍ଥ ପରାଣେ,
ଚଞ୍ଚୁଗ୍ର ଖୋଲ କ ଆସିଛୁ ସତେ,
ସଞ୍ଜୁଆ-ପବନେ ମିଳନ-ପଥେ ?
ମଞ୍ଜୁ ! ରହ ରହ କ୍ଷଣେ,
ଆଞ୍ଜୁଳ ପାତି ତୁ ମାଗୁ ପ୍ରେମ-ଭିକ୍ଷା
ନ ଦେବି ତାହା କେମନେ ? ॥ ୭ ॥

---

ମେଳା ଚଳଚ୍ଚିତ୍ରର "ଧରଣୀ କୋ ଆକାଶ ପୁକାରେ"
ସଙ୍ଗୀତର ସୁରଛନ୍ଦରେ ରଚିତ ।

# ରଜ ପରବେ

କହ ରେ ଦଇବ
କେଉଁ ଦୋଷୁଁ ରଜ
ପରବେ ମୁଁ ପରବାସୀ,
କମଳନେତ୍ରୀ ମୋ
କପଟ ବଞ୍ଚିବ
ଶୋକଜଳେ ଯିବ ଭାସି,
କାମ ପାମର ଶରେ,
କମ୍ବୁକଣ୍ଠୀ ନାଶ ଯିବ ଘରେ । ୧ ।

ଖଞ୍ଜଣଠଦ୍ଧଣା
ଖୁଆନ୍ତା ହରଷେ
ସୁବାସିତ ଖିଲିପାନ,
ଖସି ପଡ଼ୁଥାନ୍ତା
ଖରେ ମୋର ଅଙ୍କୁ
ଦେଲ୍‌ବେଳେ ଚୁମ୍ବଦାନ,
ଖେଦ ବହ୍ୱଣ ମନେ,
ଖୋଜୁଥିବ ସେ ମୋତେ ସଦନେ । ୨ ।

ଗଜଗମନା ମୋ    ଗୋଳା ଚନ୍ଦନକୁ
ବୋଲନ୍ତା କେଡ଼େ ଯତନେ,
ଗଲେ ଏ ପରବେ    ଗଳାମାଳା ମୋର
ପାଶ ନ ଗୁଡ଼ନ୍ତା କ୍ଷଣେ,
ଗଣ୍ଡେ ବୁହାଇ ବାରି,
ଗଞ୍ଜୁଥିବ କରମେ ତାହାରି । ୩ ।

ଘନକୃଷ୍ଣକେଶା    ଘର ମଣ୍ଡୁଥିବ
ଗହନ କାନନ ପରି
ଘୋର ଦୁଃଖେ ଆହା    ଘନ ଘନ ତାର
ଅଙ୍ଗ ଉଠୁଥିବ ଥରି,
ଘୋଷି ମୋ କଥାମାନ,
ଘଟେ ଥିବ କି ଆଉ ତା' ପ୍ରାଣ । ୪ ।

ଙାର ତେଜି ପ୍ରିୟା    ଙରତେ ନୟନୁଁ
ଙାରସ ମନେ ଙାରବେ,
ଙରେଖି ମୋ ପଥ    ଙରଣ ହୋଇବ
ଙାରଜାକ୍ଷୀ ମୋର ଏବେ,
ଙଶି ଦିବସ ବସି,
ଙନ୍ଦୁଥିବ ବହ୍ନ ମଦାଳସୀ । ୫ ।

ସ୍ମିତ ବାଣୀ କହି ଚୁମ୍ବି ତା' ବଦନେ
ସୃଜନ୍ତି ଉରଜେ କର,
ସ୍ମରୁ ଚନ୍ଦ୍ରାନନୀ ଚମକି ଚକିତେ
ହୋଇଲାବେଳେ ଅନ୍ତର,
ସ୍ମରଣେ ଧରନ୍ତି ଆଜ,
ସ୍ମରି ମୁଖ ସେ କରନ୍ତା ଲାଜ । ୬ ।

ଛଇଳା ନାଗରୀ ଛନ ଛନ ପ୍ରାଣେ
ଖୋଜୁଥିବ ମୋତେ ସିନା,
ଛଳାଉ ଥିବେଟି ଛଟକେ ତା ସାଙ୍ଗ-
ସାଥୀ ତାହାକୁ ମୋ ବିନା,
ଗୁପ୍ତ କରନ୍ତ ତାର,
ଛଟପଟ କରୁଥିବ ମାର । ୭ ।

ଜୀବନେ ଥିବ କି ଜୀବ-ଜୀବନ ମୋ
ଭାଳ ମୋତେ ନିରନ୍ତରେ,
ଜଳଜବଦନା ଜରଜର ଆତ୍ମା
ହେଉଥିବ କାମଶରେ,
ଜପାମାଳ ମୋହର,
ଜଳେ ତା ବିରହେ ମୋ ଅନ୍ତର । ୮ ।

ଝଟ୍ଟତ ତା ତନୁ  ଝୀନ ବାସେ ମଣ୍ଡି
ମିଳନେ ମୋ ରଖି ଚିତ୍ତ,
ଝିମିଟକେ ଆତ୍ମା  ଝାମ ଯାଉଥିବ
ମୋ ବନେ ପରାଣମିତ,
ଝାଉଁଳାଇ ତା ମୁହଁ,
ଝୁରୁଥିବ ଝରାଇଣ ଲୁହ । ୯ ।

ନବୀନ ବୟସୀ  ନମିତକୁ ଆତ୍ମା
ମଣୁଥିବ ଯୁଗ ପର,
ନଭେ ଦେଖି ଗ୍ରହ  ନଣୀଥେ ବାନ୍ଧବୀ
ନୟନେ ଲୋତକ ଭରି,
ନୀଳୋତ୍ପଳ-ନୟନା,
ନଖେ ବିଦାରୁ ଥିବ ଅବନ । ୧୦ ।

ଟିକକେ ମୋ ପ୍ରୀତି  ଟାକ ଥାଏ ସଦା
ମୋର ମରାଳଗମନା,
ଟେକ ଦେଲେ ମଥା  ଟଳେ ମୋ ଧିଆନ
ବିବେକ ମୋ ହୁଏ ବଣା,
ଟାଙ୍କି ଟାପରା ଉପରେ,
ଟିପି ଟିପି ପାଦେ ଆସେ ଘରେ । ୧୧ ।

ଠକ ବୋଲି ମୋତେ ଠଉରାଇ ଚିତ୍ତେ
କରିବ ଗୁମାନ ସିନା,
ଠାକୁରଙ୍କ ପଦେ ଟିକେ ସେ ପ୍ରଣମି
ଯାପିବ କାଳ ନବୀନା,
ଠୁଳ ଦୁଃଖେ ସେ ଆହା
ଠାବେ ଠାବେ ଝୁଣ୍ଟୁଥିବ ଯାହା । ୧୨ ।

ଡମ୍ବରୁମଧ୍ୟମା ଡରୁଥିବ ଶେଯେ
ଏକାକିନୀ ଶୋଇ ରହି,
ଡବ ଡବ ବାରି ଢୋଳାଚକ୍ଷୁ ତାର
ଗଣ୍ଡେ ଯାଉଥିବ ବହି,
ଡୁବି ଶୋକ ସାଗରେ,
ଡାକୁଥିବ ମୋତେ ନିରନ୍ତରେ । ୧୩ ।

ଢଗ ଢମାଳରେ ଢମ କହି କେତେ
ହାସ୍ୟରସେ ସାଙ୍ଗସାଥି,
ଢଳାଇଲେ ବାରି ଢାଳେ ପ୍ରେମରସେ
କରିଛି ହେବ ତା ସ୍ମୃତି,
ଢାଳି ବାରି ମୋ ସଙ୍ଗି,
ଢୋଳାଇବ କରେ ଗଣ୍ଡ ରଙ୍ଗି । ୧୪ ।

ନାରୀରତନ ମୋ                    ନାଟଣ କାମଚାପ
ସିଞ୍ଚ ତା ପ୍ରଣୟ-ବାର,
ନାଗରୀ ହୃଦର                    ନ ଥିବଟି ଚେତା
ବିରହ ବେଦନା ଜାଳ,
ନତ ଥିବ ବଦନ,
ନିଦ୍ରା ଆହାରେ ନଥିବ ମନ । ୧୫ ।

ତେଜ ବାସଭୂଷା                    ତପତ ଲୋତକେ
ଭାଜୁଥିବ ମୋର କଥା,
ତରସ୍ତ ପରାଣେ                    ତଳେ ଥିବ ଶୋଇ
ହୃଦେ ବହି ଗୁରୁ ବ୍ୟଥା,
ତା'ର ନବ ଯୌବନ,
ତିଳେ ତିଳେ ହେଲା ଅକାରଣ । ୧୬।

ଥକ୍କା ହୋଇ ଏବେ                    ଥିବ ମୋ ସଜନୀ
ଆଜି ଏ ରଜ ପରବେ,
ଥର ଥର ନେତ୍ରୁଁ                    ଥନ ଥନ ବନ
ବୁହାଉ ଥିବ ନୀରବେ,
ଥିଲେ ସେନେହ ବଶେ,
ଥୋଇଥାନ୍ତି ମୋ ଅଙ୍କେ ହରଷେ । ୧୭।

ଦମକା ପବନେ ଦମ ଦମ ସ୍ଥିତ
ପଡ଼ୁଥିବ ତାର ଆଜ,
ଦବା ନଶି ପ୍ରିୟା ଦୁଃଖମନେ ଥିବ
ମଉନାବସ୍ଥି ସେ ସାଜ,
ଦକ ଦକ ମୋ ମନ
ଦଣ୍ଡ ଦଏ ବନ୍ଧୁ କ କାରଣ ।୧୮।

ଧରମଣ୍ଡନା ମୋ ଧିଆନେ ସତତ
ନବେଶି ଥିବ ତା ମନ,
ଧିକ ମଣୁଥିବ ଧାତକାରେ ପ୍ରାଣ
ନୋହିବାରୁ ମୋ ମିଳନ,
ଧୀର କେଳସଦନେ,
ଧରେ ରଖନ୍ତା ଭୁଜବନ୍ଧନେ ।୧୯।

ନଃସଙ୍ଗ ଜୀବନେ ନଷ୍ଫଳ ହୋଇବ
ତାର ବସନ ଭୂଷଣ,
ନଷ୍କରୁଣ ବନ୍ଧୁ ନ କଲ କ ଅବା
ଧିକ ଧିକ ଏ ଜୀବନ,
ନ ପାଇଲ ଯା ଶୁଣି
ନାଗରତନ ବଚନ ପୁଣି ।୨୦।

ପକାଇଣ ମଲ୍ଲୀ ପାଖୁଡ଼ା ସେ ଶେଯେ
ଗୁହ୍ନିଁଥିବ ମୋର ପଥ,
ପଞ୍ଜୁରୀ ଆବଦ୍ଧ ପକ୍ଷୀ ସମ ସିନା
ଛଟପଟ ହେବ ଯତ,
ପାଶେ ଲଭନ୍ତୁ ସୁଖ,
ପରବାସ ଦେଲା ଏତେ ଦୁଃଖ । ୨୧ ।

ଫାଟିଯାଏ ହୃଦ ଫେଡ଼ଲ ନାହିଁ ଯା
କନକଗୋଷ୍ଠ ଗୁମାନ,
ଫିକା ମୁଖେ ବାଳା ଫିଟାଇଥିବ ତା
ଘନକେଶ ଜୁଡ଼ା ଜାଣ,
ଫିଙ୍ଗି ଅଙ୍ଗଭୂଷଣେ
ଫେରୁଥିବ ଦାଣ୍ଡୁଁ ଦୁଃଖମନେ । ୨୨ ।

ବରବରନା ମୋ ବରଷାଇ ବାରି
ବରଷକର ଏ ଦିନେ,
ବର ମାଗୁଥିବ ବର ଦେବ ପଦେ
ବରଜ ସବୁ ମୋ ବନେ
ବରତିବ କି ସତେ
ବରଭୁଲ-ଉରଜା ଉଷତେ । ୨୩ ।

ଘସୁଥିବ ମାର ଭ୍ରୂଲତା ଯୁଗଳେ
ଆହା ଚମ୍ପାବରନାର,
ଭରମେ କହୁଚି ଭିଡ଼ ଧରୁଥିବ
ବସନ ସିନା ତାହାର,
ଗବଳହ୍ରଲେ ଥରେ
ଭୂମି ଅଣ୍ଡାଳୁଥିବ ସେ ଖରେ । ୨୪ ।

ମରାଳଗମନା ମାରଣରେ ଆହା
ହେଉଥିବ କଲବଲ,
ମରମ ବେଦନା ମରମରେ ଗୁପି
ମଉନେ ହୋଇ ବିକଳ,
'ମଳି' 'ମଳି' ସେ କହି
ମହୀପରେ ଗଡ଼ୁଥିବ ସହି । ୨୫ ।

ଯତନେ ରଚିଣ ଯାବକେ ଚରଣ
ପନ୍ତୁଡ଼ୁଥିବ ପଲଙ୍କେ,
ଯାପୁଥିବ କଣି ଯୋଗାବର ଆହା
କେତେ ଆଶା ରଖି ବକ୍ଷେ,
ଯାମକୁ ମୋ ନବୀନା,
ଯୁଗ ମଣୁଥିବ ମୋର ବିନା । ୨୬ ।

ରସ ରଙ୍ଗିମା ମୋ ରସୁଥାନ୍ତା ମନ
ପ୍ରେମେ ରସଦାନେ ଆଜ,
ରସବନ୍ତ ବନା ରସିକ ପରାଣେ
ଏ ମୋର ଆଉ କ କାର୍ଯ୍ୟ
ରଜ ମଉଜ ତେଜ,
ରହେ ପରବାସେ ଭାଗ୍ୟ ହେଜ । ୨୭ ।

ଲେଟିଥାନ୍ତ ସୁଖେ ଲଳନାର ବକ୍ଷେ
ଫେଇ ଅଙ୍ଗ୍ ତାର ବାସ,
ଲେଉଟିଥାନ୍ତା ପ୍ରୀତି ଲଟାଇ ମୋ ଅଙ୍ଗେ
ପ୍ରିୟା କର ଦରହାସ,
ଲାଜ ତେଜ ମୁଁ କ୍ଷଣେ,
ଲାଗି ପଡ଼ନ୍ତ ମାବମୋଚନେ । ୨୮ ।

ବଳାନ୍ତି ମୋ ଚିତ୍ତ ବାରେ ବପଘାତେ
ହୋଇ ପ୍ରେମେ ମତ୍ତଭୋଳା,
ବଳାଙ୍ଗିନୀ ବାଳା ବଳା ଖୋଲ ପଦୁଁ
ବୁଜନ୍ତା ତା ଗୃହୁ ଡୋଳା,
ବୃଥା ହେଲା ଭାବନା
ବଶେ, ହତଭାଗ୍ୟେ ହେଲା ଗଣା । ୨୯ ।

ଶୟନେ ସ୍ୱପନେ ସଦା ମୋ ମାନସୀ
ଇଚ୍ଛୁଥିବ ମୋର ସଙ୍ଗ
ଶୁଖିଥିବ ସଜ ସରୋଜ ବଦନ
ଚମକୁଥିବ ତା ଅଙ୍ଗ,
ଶେଷେ ହୋଇ ବିମନ,
ଶୋକସାଗରେ ହେବ ମଜ୍ଜନ । ୩୦ ।

ଷୋଳବୟସୀ ମୋ ସଜ ଫୁଟା ଫୁଲେ
ଯତନେ ଗୁନ୍ଥିଣ ମାଳା,
ଷଟପଦକେଶୀ ସାରସଗମନୀ
କ୍ଷୀଣକଟି ନବବାଳା,
ସାଗ୍ର ଜଣି ଅନାଇ,
ଶେଷେ ଫିଙ୍ଗିବ ଯାଚନା ପାଇ । ୩୧ ।

ସରସିଜଦୃଶା ସରମ ଲୁହାଣୀ
ପାଶୋର ନ ଯିବ ମନୁଁ,
ସରଗ ସୁନ୍ଦରୀ ସର ନୋହିବେ ଟି
ତାକୁ ସେ ମୋ କ୍ଷୀଣ ତନୁ ।
ସାର ଅଟେ ତା ପ୍ରୀତି,
ସୁମରଇ ପ୍ରିୟାରେ ମୁଁ ଜତ । ୩୨ ।

ହରଣ ନେଣୀର ହଜଥିବ ବୁଦ୍ଧି
ହରପୁ ଫୁଲଶରେ,
ହରଷବଦନା ହରନ୍ତା ମୋ ମନ
ଆହା କଥାପଦକରେ,
ହାଦେ ଚମକ ହାସ୍ୟ
ହେଉଥିବ ପାଗଳମାପ୍ରାପ୍ୟ । ୩୩ ।

କ୍ଷୋଭ ଆସେ ମନେ କ୍ଷୀଣମଧ୍ୟମା ମୋ
ସହୁଥିବ କାମଦାଉ
କ୍ଷବ୍‌ଧ ମନେ ପ୍ରଭୋ ! କ୍ଷମା ମାଗେ ଦାସ
ନ କର ପ୍ରବାସୀ ଆଉ,
କ୍ଷିତି-ମଣ୍ଡନା ସଙ୍ଗ,
କ୍ଷଣେ ନ କରାଅ ଆଉ ଭଙ୍ଗ । ୩୪ ।

# ବିରହୀର ସଂସାର

ବଇଶାଖେ ଘୋର ଝାଞ୍ଜି ବନ୍ଧେ,
ସୂବଜାନ ମୁଁ ଯେ                    ଦୁଃଖେ ହାୟ !
ଦର୍ପକ ଗୁରୁଦର୍ପ ମନ୍ଦେ ॥
ପ୍ରିୟତମା ମୋର କାହିଁ ରେ ଆଜି,
ଅଙ୍ଗ କାହାର ଦେବ ମୁଁ ସାଜି,
ଅଧରେ ଫୁଟାଇ ମଧୁର ହାସ,
ଫେଇ କା ଅଙ୍ଗୁ ସୂକ୍ଷ୍ମୀନ ବାସ,
ଚନ୍ଦନରେ,
ଚର୍ଚ୍ଚିତ କରି କା' କଳେବରେ,
ଦେଖି ସେ ଶୋଭା,
ଚିତ୍ତଲୋଭା
ପ୍ରଣୟ-ମଧୁର ବଚନ ଛଳେ
ପ୍ରଣୟିନୀ ସାଥେ କି କୁତୂହଳେ
ଥାନ୍ତି ମାତି,
କିନ୍ତୁ ହାୟ ! ଦୂରେ ବହୁଦୂରେ ପରାଣସାଥୀ । ୧ ।

ଜ୍ୟୈଷ୍ଠ ମାସରେ ପଡ଼ଇ ରଜ
ଘଞ୍ଚ-ଉରଜା ଚଞ୍ଚଳ ମନେ
ମୋର ଆଗମନେ ହୁଅଇ ସଜ ।।
ଝୀନବାସ ତଳୁ ଅଙ୍ଗ ସୁଷମା
ପ୍ରିୟତମାର ମୋ ଉଠଇ ଫୁଟି,
ଲାଜ ତେଜି ମନୁଁ ଚନ୍ଦ୍ରବଦନୁଁ
ପିଉଥାନ୍ତି ସେ ପୀୟୂଷ ଲୁଟି,
ଲଜ୍ଜାଭରେ,
ଲୁଚୁଏ ବଦନ ପଣତ-ତଳେ;
ଆହା ସେ ଛବି
ବର୍ଣ୍ଣି ପାରିବ କହ କେ କବି ?
ହର୍ଷ ଲଜ୍ଜା ଉଭୟ ରଖି,
ମୋ ପ୍ରିୟ ସଖି,
ଜ୍ୟୋସ୍ନାଧଉତ ମଧୁରରାତେ,
ମୋର ଭୁଲେ ଯେବେ ପ୍ରଣୟେ ମାତେ,
ଭଲ ସେ କଥା,
ଅନ୍ତରେ ଆଜି ଜାଗଇ ବ୍ୟଥା । ୨ ।

ଆଷାଢ଼ ମାସରେ ବରଷା ଆସେ,
ଏକାକେ ହାୟ ବଞ୍ଚେ ମୁଁ ଦିନ
ଉଷ୍ଣଲୋତକ ଦୀର୍ଘଶ୍ୱାସେ !
ଝିପି ଝିପି ମେଘେ ତ୍ରସ୍ତ-ଉରେ,
ଟିପି ଟିପି ପାଦେ ଥରେ ମୋ ପୁରେ,
ଛପି ଛପି ମୋର ଚମ୍ପା ଗୋରୀ,
କରିଥିଲା ମୋର ଚିତ୍ତ ଚୋରି,
ଗୁରୁଗମ୍ଭୀର ବଜ୍ରନାଦେ,
କଂପିତ-ବୁକେ ତ୍ରସ୍ତପାଦେ,
ଶଙ୍କାଭରେ,
ଜାବୋଡ଼ିଥିଲା ମୋ ବକ୍ଷେ ଥରେ,
ଭାଗ୍ୟହୀନ
ଆସିବ କି ଫେର ଆଉ ସେ ଦିନ !
ଆଜି ପରବାସେ ଯକ୍ଷ ସମ,
ଦଣ୍ଡ ଭୋଗଇ କି ନିରମମ,
ହାୟରେ ହାୟ,
ବିରହ-ଦୁଃଖେ ଶୀର୍ଣ୍ଣକାୟ । ୩ ।

ଶ୍ରାବଣେ ଝୁଲଣ ଯାତ୍ରା,
ଉଲ୍ଲାସ ଆଣେ ଜଗତେ କିନ୍ତୁ
ବଢ଼େ ମୋ ଦୁଃଖ ମାତ୍ରା ।
ଝର ଝର ଝର ବରଷା ଧାର,
ବହିଯାଏ ସିନା ରଜନୀ ସାର,
କିନ୍ତୁ ଜାଣେ,
ଚର ଚର କରି ବିରହୀ-ବକ୍ଷେ
ଛୁରିକା ହାଣେ ।
ଥରକୁ ଥର ମୋ ଅଙ୍ଗ ଥରେ,
ନିଷ୍ଠୁର ସେହି ଅତନୁ ଶରେ,
ପ୍ରିୟାର···ଲାଗି ।
ବକ୍ଷେ ବେଦନା ଉଠଇ ଜାଗି,
କିନ୍ତୁ ହାସ୍ୟ ! କରିବ କସ,
ହୃଦୟର ମଧୁ-ପାତ୍ରେ ଦଇବ
ଭରି ଦେଇଛନ୍ତି ରେ ବିରହ-ବିଷ । ୪ ।

ଘମୁବେ କେତେ ବରଷ ଉଷା,
ସନ୍ତ ସ୍ମିତ ଚନ୍ଦନେ ମୋର
ପାଣ୍ଡୁଥାଳା ରେ ଆହ୍ୱା ମୋ ପୋଷା ॥
ସହ୍ୱ ନୋହେ ଏହ୍ୱ ଶାସ୍ତ୍ର ଖରା,
ମାଟଜନ କଣ୍ଠ ବାକ୍ୟ ପରା,
ଶୁଭ୍ରବରନ ଜଳଦ ଏକାଳେ
ସହସା ଆକାଶେ ଢାଙ୍କେ,
ଲୁଚକାଣ୍ଡି ଖେଳେ ସୂର୍ଯ୍ୟ ଙ୍କ ଅବା
ଚଲ୍ ବଉଦର ଫାଙ୍କେ ।
ଦଗହଜା ମନ ଗହ୍ୱରେ ମମ,
ଆଜିର ଏ ଚଲ ବଉଦ ସମ,
ଅଜ୍ଞାତ କଥା
ଉଙ୍କି ମାରି ମୋ ଅନ୍ତରେ ଆଜ
ଜଗାଏ ବ୍ୟଥା । ୫ ।

ଆଶ୍ୱିନ ମାସ ହୋଇଲା ଆସି,

ଦଶହରା ମଧ୍ୟ-                                    ପାର୍ବଣେ ଆଜ

ହର୍ଷେ ସକଳେ ଗଲେରେ ଭାସି ॥

ପୂର୍ଣ୍ଣିମୀର ଏ ଚନ୍ଦ୍ର ଗଗନେ ରାଜେ,

କୁମାରୀ ଅଙ୍ଗ ନବ ବସ୍ତ୍ରରେ ସାଜେ,

ରୂପ ଲାବଣ୍ୟ ତାର,

ଝଲ ଉଠେ ବାରବାର,

ପାର୍ବଣେ ଆଜ ଜ୍ୟୋତ୍ସ୍ନା-ଧଉତ ରାତେ

ହର୍ଷେ କୁମାରୀ ପୁଚଖେଳେ ସିନା ମାତେ,

ହୁଳହୁଳି ମଧୁସ୍ୱନ,

କମ୍ପାଏ ଅପଘନ,

ନୀରବେ ବସି ମୁଁ ବଜନ ତଟିନୀ କୂଳେ,

ବଟବୃକ୍ଷର ମୂଳେ,

ଅମଳ ଧବଳ ପୂର୍ଣ୍ଣଚନ୍ଦ୍ରେ ଚାହିଁ,

ପ୍ରଶ୍ନ ପଚାରେ କହ ରେ ଦଇବ କାହିଁ,

ଚନ୍ଦ୍ରବଦନା ମୋର,

ଯା' ବଦନେ ଭୋଗେ ବରହ କଷ୍ଟ ଘୋର । ୭ ।

କାର୍ତ୍ତିକ ମାସେ ପରଶେ ଶୀତ,
ସଙ୍ଗତେ କା'ର ବଞ୍ଚିବ ଦିନ
ଦୂରେ ବନ୍ଧୁଦୂରେ ପରାଣମିତ ।
ଶୀତଳ ପବନ ବହଇ ଖରେ,
ପ୍ରିୟା ବିନା ମୋର ଚିତ୍ତ ଥରେ,
ଆଉ କା' ପାଶେ,
ମଧୁର ହାସେ,
ଯାପିବ ଦୀର୍ଘ ରଜନୀ,
ନାହିଁ ପାଶେ ମୋର ସଜନୀ,
କାହା ଭୁଜେ ଭୁଜ ଛନ୍ଦି ଆଜି,
ପୁରୁଷାୟିତରେ କରାଇ ରାଜି,
ହର୍ଷଭରେ
ଯାପିବ ସିନା ଏ ରଜନୀ ଖରେ,
ତା ବିନା କେ ଆଉ
ଖୁଣ୍ଟି ମୋ ମାନସୁଁ ଛଡ଼ାଇ
ଚୂର୍ଣ୍ଣ କରିବ
ଦୁଷ୍ଟ-ଅତନୁ ବଡ଼ାଇ । ୭ ।

ମାର୍ଗଶୀରର ଶୀତଳ ବାଆ,
କଂପନ ଆଣେ ଅଙ୍ଗେ ମୋହର
ନାହିଁ ମୋର ପାଶେ ପତ୍ନୀ ଆହା ॥
ଶିର ଶିର ସୁରେ ପବନ ବହେ,
ବିରହ-ବିଧୁର-ପରାଣେ ଦହେ,
ଅଙ୍ଗେ କାହାର ଅଙ୍ଗକୁ ମୋର ଜଡ଼ାଇ
ହେବେ ଅନଙ୍ଗ ଦମ୍ଭକୁ ଦେଇ ଛଡ଼ାଇ
କାଟିବି ଆଜ ମୁଁ ଦିନ,
ଆହା ମୁଁ ଭାଗ୍ୟହୀନ;
ପ୍ରିୟା ବିନା କାମ ତୀବ୍ର ଜାଳା,
ଦହନ କରେ ମୋ ଅଙ୍ଗ ସାରା,
ଦିନକୁ ଦିନ
କଳେବର ମୋର ହେଲା ରେ କ୍ଷୀଣ ।.
ସରିଯାଉଛି ମୋ ଆୟୁଷ,
କେବେ ମନ ଭରି ପାନ କରିବି ମୁଁ
ପ୍ରିୟାର ପ୍ରଣୟ-ପୀୟୂଷ । ୮ ।

ପୁଷ ମାସ ଆସି ପ୍ରବେଶ କଲ୍,
ସଂଯୋଗୀ ସିନା ହର୍ଷେ ରହିଲେ
ବିଯୋଗୀର ଆହା ଜୀବନ ଗଲ୍ ॥
ପୁଷ୍ପଧନ୍ୱା ସାଜିଲଣି ଏବେ ସାଜ,
ହନକା ଆଣଇ ଚିତ୍ତେ ମୋହର ଆଜ,
ଶିଖିଷାଙ୍ଗୀ ମୋ କେବଳ ଏ କାଳେ ସାହା
ତା' ବିନା ନ ଚାଏ ଅନ୍ୟ ମୁକ୍ତି ରାହା,
ଆଜି ଏ ଦୁଃଖ ନାଶେ
ପାଇବି କି ତାକୁ ସତେ ମୋ ବକ୍ଷପାଶେ !
ଦଇବ ରଚିଛି ଛନ୍ଦ,
ଲେଖିଛି କପାଳେ ମନ୍ଦ,
ଯୁବତୀ ପ୍ରିୟାର ସଙ୍ଗ ଆଜି ମୁଁ ତେଜି,
ବଞ୍ଚି ପାରିଛି କି ସୁଖ ମାନସେ ହେଜି,
ଧିକ୍‌କାର କରେ ଶତ,
ପରାଣ ମୋହର ନ ଯାଇ ରହିଛି
ଯାହା ସେ କଣ୍ଠଗତ । ୯ ।

ମାଘ ମାସ ରାତ୍ରି ପାହାନ୍ତା ବେଳା,
ବାଘ ଛୁଟ ନ୍ୟାୟେ                    ଜାବୋଡ଼େ ଅଙ୍ଗ
ବରଷ୍ଫାର ସିନା ବୁଡ଼ଇ ଭେଳା ॥
ଅଦିନ ବରଷା ଆସେ ରେ ମାଡ଼,
ପ୍ରିୟାକୁ ମୁଁ ଦୂରେ ଆସିଛି ଛାଡ଼,
କରିବ କିସ,
ଚିନ୍ତାମଗ୍ନ ଅହର୍ନିଶ ॥
ଥରି ଉଠେ ଘନ ଘନ ମୋ ସ୍ମୃତି,
ନାହିଁ ଜାଣେ ଯେଣୁ ପରାଣସାଥୀ,
ସଙ୍ଗେ ତା'ର,
ଯାପୁଥାନ୍ତି ମୁଁ ହର୍ଷେ କାଳ ॥
କିନ୍ତୁ ଆଜ ଏ ଭାବନା ଘୋର,
ପ୍ରିୟତମା ନାହିଁ ପାଣରେ ମୋର,
ଭଗ୍ନ-ଉରେ
ମୁଁ ଯେ ଆଜ ଦୂରେ ବହୁତ ଦୂରେ । ୧୦ ;

ଫାଲ୍‌ଗୁନ ମାସ ଆସିଲ୍ ଏବେ,
ପ୍ରଳୟ ସରଜେ                    ମଳୟ ସମୀର
ପ୍ରିୟାସଙ୍ଗ ମୁଁ ଲଭିବ କେବେ !
ଫଗୁଆ ସଙ୍ଗେ ଫୁଟଇ ଫୁଲ,
ସୁଷମା କାହିଁରେ ତା ସମତୁଲ,
ହସି ଉଠେ ଶ୍ୟାମ-କୁଞ୍ଜ
ଚଉଦିଗେ ଅଳି କୁଞ୍ଜ ।
ପ୍ରକୃତିର ଏହି ସୁଷମାଚୟ,
ବିରହୀ ପରାଣେ ଜଗାଏ ଭୟ,
ପଞ୍ଚମ ସୁରେ କୋକିଳର କୁହୁ ବାଣୀ,
ବିରହ-ବିଧୁର-ଚିତ୍ତେ ମୋ ଦିଏ ହାଣି,
କା' ପାଶେ ଦୁଃଖ କହିବି,
ଭାଗ୍ୟ ଆଦର ମଉନରେ ସିନା ମରିବି ! । ୧୧ ।

ମଧୁମୟ ଏହି ଚଇତି ରାତି,
ଉପଭୋଗ୍ୟ ସେ ପ୍ରଣୟି-ଯୁଗଳେ
ବିରହୀ ପରାଣେ ଚଳାଏ କାନ୍ତି ॥
ମନେ ପଡ଼େ ମୋର ଅତୀତ କଥା,
ଅନ୍ତରେ ଆଜ ଜଗାଏ ବ୍ୟଥା,
ଦୂରେ ମୋ ସଜନୀ, କାହା ଗଳା ଆଉ ଆଜ
ମଲ୍ଲୀ କୁସୁମେ ସରାଗେ ଦେବ ରେ ସାଜ ॥
ତନ୍ଦ୍ରା ବିଭୋରେ ଚନ୍ଦ୍ରବଦନେ କା'ର
ଉଲ୍ଲାସଭରେ ଚୁମ୍ବି ମୁଁ ବାରବାର,
ମାତିବ ନବୀନ ହର୍ଷେ,
କାହାର ଅଙ୍ଗ ସ୍ପର୍ଶେ ।
ଭୁଜ ବନ୍ଧନେ କାହାର ତା' ବିନା ଆଉ,
ସଂଭାଳ ନେବ ଦର୍ପକର ସେ ଦାଉ,
ଅନଙ୍ଗ କାହାର ଅଙ୍ଗକୁ ମୋର ଜଡ଼ାଇ
ଚିନ୍ତା, ଦୈନ୍ୟ ମାନସୁଁ ଦେବ ମୁଁ ଏଡ଼ାଇ,
ମିଳନଂ-ଛନ୍ଦେ ପାଶୋରେ ସକଳ ବିଶ୍ୱ,
ଇନ୍ଦ୍ର ପଦବୀ ତୁଚ୍ଛ ମଣେ ମୁଁ
ହୁଏ ପଛେ ଅତି ନିଃସ୍ୱ । ୧୨ ।

# ମେଘାଲୋକେ

ଝିପି ଝିପି ଝିପି ବରଷେ ମେଘ,
ବତାସର ଆଜ ତୀବ୍ର ବେଗ,
କଂପେ ଗାତ୍ର,
ନାହିଁ ପାଶେ ମୋର ପରାଣ ସାଥି । ୧ ।

"ରାମଗିରି" ମୋର ଭଗ୍ନ କୁଟୀ,
ଦଇବ ନେଇଛି ହର୍ଷ ଲୁଟି,
ଦୁଃଖେ ଆଜ,
ମନବଳ ମୋର ଯାଇଛି ଭାଜି । ୨ ।

ଅଳକାପତି ସେ କୁବେର ଶାପେ
ଯକ୍ଷ ଯେସନ ଦିବସ ଯାପେ,
କର୍ମ ଯୋଗେ,
ବର୍ଷକ ଲଗି ବିରହ ଭୋଗେ । ୩ ।

ବନ୍ଦୀ ସମ ମୁଁ ଏକାକୀ ଗୃହେ,
ସିକ୍ତ ଗଣ୍ଡ ଉଷ୍ଣ ଲୁହେ,
ଦୃଷ୍ଟି ଢାଳ,
ଗୃହିଁଛୁ ଉର୍ଦ୍ଧ୍ୱେ ପ୍ରିୟାରେ ଭାଳ । ୪ ।

ଆଠୋଟି ମାସର ଅନ୍ତେ ପୁଣି,
ଜଳଦମନ୍ଦ୍ର ଶବ୍ଦ ଶୁଣି,
ଅଙ୍କେ ତା'ର
ଦେଖି ଏ ଚପଳା ବାରମ୍ବାର । ୫ ।

ମନେ ପଡ଼େ ମୋର ଅତୀତ କଥା,
ଘୂରି ଉଠେ ପୁଣି ଏ ମୋର ମଥା,
ପତ୍ନୀ ଲଗି,
ଅନ୍ତରେ ଉଠେ ବେଦନା ଜାଗି । ୬ ।

ମେଘକୋଳେ ଯଥା ବିଜୁଳି ଶୋହେ,
ଦର୍ଶନେ ଜନ ଚିତ୍ତ ମୋହେ,
ତାହାରି ସମ,
ଘଟେ ବିପତ୍ତିରେ କାନ୍ତା ମମ । ୭ ।

ଲଜ୍ଜା, ହର୍ଷ ଉଭୟ ସାଥେ,
ପୁରୁଷାୟିତରେ ପ୍ରିୟା ମୋ ମାତେ,
ବର୍ଷା ସମ,
ଶାନ୍ତ କରଏ ଚିତ୍ତ ମମ । ୮ ।

ଉତ୍କଣ୍ଠାର ତଟିମା ଗ୍ରାସେ,
ଦମ୍ଭ-ପାଦପ ସହସା ଭସେ,
କ୍ଷଣକୁ କ୍ଷଣ,
ପୁଲକିତ ହୁଏ ମୋ ଅପଘନ । ୯ ।

ନବକଦମ୍ବ ପୁଷ୍ପ ପରି,
ପୁଲକେ ଶରୀର ଉଠଇ ଥରି,
ବାରଂବାର,
ଜଳଦରେ ! ନାହିଁ ଉପମା ତା'ର । ୧୦ ।

ନୃତ୍ୟନିପୁଣା ମୟୂରୀ ସମ,
ପ୍ରିୟା ମଥାବେଣୀ କି ଅନୁପମ,
ଛନ୍ଦ ଢୋଳ,
ନର୍ତ୍ତନ ଛଳେ ଖେଳଇ ଦୋଳ । ୧୧ ।

କାମକେଳିରତ କାଳେ ମୋ ବାଳା;
ଦୋହଲେ ବକ୍ଷେ ମୁକ୍ତାମାଳା,
ଛିଣ୍ଡଇ ତାହା,
ବକପନ୍ତିର ଦୃଶ୍ୟ ଆହା । ୧୨ ।

କଟି ମେଖଳାର ଶବ୍ଦ ଯାହା,
ପିନ୍ଧିଥାଏ ମୋ ପ୍ରେୟସୀ ଆହା,
ଭେକର ସ୍ୱନ,
ସମାନ ସେ ହରି ନିଏ ମୋ ମନ । ୧୩ ।

ଉନ୍ନତ ତାର ଉରଜ ଦୁଇ,
ମନ ଭରି ଯେବେ ମର୍ଦ୍ଦେ ମୁହିଁ,
ନଖକ୍ଷତ
ସାଧବ ବୋହୂର ଦୃଶ୍ୟ ସତ । ୧୪ ।

ବଚନେ ତା "ମଲ୍ଲି" କୁସୁମ ଫୁଟେ,
ଚୁମ୍ବନ କାଳେ ଅଧର ଫୁଟେ,
ଆହା ସେ ଛବି,
ବର୍ଣ୍ଣି ପାରିବ କହ କେ କବି । ୧୫ ।

ଗଗନୁଁ କରକା ପତନ ସମ,
ବହଇ ଘର୍ମ କି ଅନୁପମ,
ହାସ୍ୟ ସେ ଶୋଭା,
ଉପମା ନାହିଁ ତା' ଶଶିଲୋଭା । ୧୬ ।

ମାଳତୀ କୁସୁମ ସମାନ ତା'ର,
ଅଙ୍ଗ ଆମୋଦ ବାରକୁ ବାର,
ଛୁଟେ ରେ ଛୁଟେ,
ଆଘ୍ରାଣେ ମୋର ଚିତ୍ତ ଲୁଟେ । ୧୭ ।

ଝଞ୍ଜାପବନ ସମାନ ତା'ର,
ନିଃଶ୍ୱାସ ବହେ ବାରମ୍ବାର,
ପୟୋଦ ସମ,
କୁଚଯୁଗ ଚଳେ କି ଅନୁପମ । ୧୮ ।

ପ୍ରିୟାର ଅଙ୍ଗଭୂଷଣ ମାନ,
ଜୁଳୁଜୁଳିଆର ଦୃଶ୍ୟ ଜାଣ,
ଗଭର ଫୁଲ,
ଶେଯପରେ ଶୋଭେ ଛଭୁର ଭୁଲ । ୧୯ ।

ଶସିତ ତାର ବସନ ଆହା,
ଇନ୍ଦ୍ରଧନୁର କାନ୍ତି ତାହା,
ଧରଇ ସିନା,
ସ୍ୱପଷେତେ ପ୍ରିୟା ପ୍ରଣୟ-ଲୀନା । ୨୦ ।

ବରଷି ପ୍ରଣୟ ମଧୁର ରସ,
ବଦନ ସତତ କି ହସ ହସ,
ମନ୍ଦ୍ର ନାଦ,
ହୁଂକୃତ ସିନା ନିର୍ବିବାଦ । ୨୧ ।

ଏସନ ପ୍ରିୟାର ସୁରତ କ୍ରୀଡ଼ା,
ମିଶ୍ରିତ ଯହିଁ ହର୍ଷ, ବ୍ରୀଡ଼ା,
"ନାହିଁ ଯା" ବାଣୀ,
ସ୍ମରଣେ ମରମ ହୁଏ ମୋ ହାଣି । ୨୨ ।

କାମାନଳ ମୋର ହୃଦୟ-ବହ୍ନି
ଶାନ୍ତ କରେ ସେ ନ ଯାଏ ମନ୍ନି,
ହାୟରେ ହାୟ,
ଚନ୍ଦ୍ରାରେ ତା'ର ଶୀର୍ଣ୍ଣକାୟ । ୨୩ ।

ଦେଖ ଦେଖ ମେଘ ! ମୋହର ଦଶା,
ପ୍ରିୟତମା ମୋର ଏକା ଭରସା,
ବରହେ ତା'ର
ନନ୍ଦେ କପାଳେ ବାରକୁ ବାର । ୨୪ ।

ଚପଳା ଯେସନ ତୋହର ସାଥି,
ପ୍ରଣୟେ ତା' ସାଥେ ଯାଉ ତୁ ମାତି,
ହର୍ଷଭରେ,
ନଭୋମଣ୍ଡଳେ ବିରାଜ ଖରେ । ୨୫ ।

ସ୍ୱେଚ୍ଛାରେ ତୁହି ବିଚରୁ ନଭେ,
ନିର୍ଭୟ ମନେ ସଗୌରବେ,
କିନ୍ତୁ ହାୟ !
ଭାଗ୍ୟହୀନ ମୁଁ ନିରୁପାୟ । ୨୬ ।

ନାହିଁ ମୋ ଶକ୍ତି, ନାହିଁ ମୋ ଧନ,
ଦୁର୍ବଳ ଦେହ, ତ୍ରସ୍ତ ମନ,
କ୍ଷମତା ନାହିଁ,
ତୋ ସାଥେ ସମାନ ହେବ ମୁଁ କାହିଁ । ୨୭ ।

ମଣଇ ମୁଁ ସବୁ ସ୍ୱପ୍ନ ସିନା,
ବିଧାତାର ଶୁଭ ଦୃଷ୍ଟି ବିନା,
ସଫଳ କାହିଁ,
ହେବ ମୋର ଆଶା, ପରତେ ନାହିଁ । ୨୮ ।

---

# ସପନ-ସୁନ୍ଦରୀ

ସପନ ସୁନ୍ଦରି !
ଗୋପନେ କିଆଁ ଗୋ
ଆସ ମୋର ଶୂନ୍ୟପୁରେ
ଲପନ ଇଙ୍ଗିତେ
କି ଅବୁଝା କଥା
କୁହ ହସି ବ୍ୟଥାତୁରେ ।
କଂପନ ଜାଗଇ
ଏ ବିରହୀ ପ୍ରାଣେ
ତୁମରି କଟାକ୍ଷ ପାତେ,
ତପନ ଜଳେ ମୋ
ଦରଦୀ ପରାଣେ
ତବ ଆଗମନେ ଏଥେ,
ରୂପସି ! ଫେର ଗୋ ଖରେ,
ବପନ ନ କର
ଖେଦବୀଜ ଆଉ
ଦେଖାଇ ସେ ରୂପ ଥରେ । ୧ ।

ମଞ୍ଜୀର ଗୋ ତବ
ମଂଜୁଳ ନିନାଦେ
ବେସୁରା ରାଗରେ ଆଜି,
ଶିଂଜନନ ତା'ର ଗୋ
ଜଳିଯାଇ ଦିଏ
ସଖି ମୋର ଲୋମରାଜି ।
ଗୁଞ୍ଜନ ତୋଳେ ମୁଁ
ବିରହୀ ପରାଣେ
ସୁମରି ଅଜ୍ଞାତ କଥା,
ପିଂଜର ମୋହର
ଦୋହଲାଇ ଦିଏ
ଦାରୁଣ ବିଚ୍ଛେଦ ବ୍ୟଥା,
କଂଜ ବଦନା ରେ ମୋର,
ରଂଜନ ଆଣେ କି
ଆଶାପ୍ଲୁ ଚରଣେ
ଆଜି ଏ ଭାବ ବିଭୋର । ୨ ।

ଭରମ ଉପୁଜେ
ସତେ କ ଟେଗା ପ୍ରିୟା
ନ ପାରୁଛ ମୋତେ ଭୁଲି,
କରମ ଆଦର
ରଖୁଛ କ ସତେ
ପ୍ରଣୟ-ପ୍ରଦୀପ ଜାଳି ।
ଚରମ ସୀମାରେ
ପହଞ୍ଚ ସଜନ !
ନ ପାରିଲ ଆଉ ସହି,
ପରମ ସମ୍ପଦ
ପୀରତି ଲାଳସେ
ଆସିଲ ମୋ ପାଶେ ଧାଇଁ,
ସରମ ଗୃହାଣି ଢାଳି
ମରମେ ମୋହର
ବିରହ-ଅନଳ
ନ ଦିଅ ଟେଗା ଆଉ ଜାଳି ।୩।

ଚରଣ ପାଶେ ମୋ
ବସିଛ କଂପାଇ
ବହ୍ନି ମନେ ଅଭିମାନ,
ଶରଣ ଲେଡ଼ି କ
ନ ସହ୍ନି ପାରି ଏ
ମନମଥ କାମବାଣ ।
ବରଣ କରିଣ
ଅକୁହା କଷଣ
ହୃଦୟହୀନ ସମାଜେ,
ମରଣ ଯାତନା
ସହ୍ନି ସହ୍ନି ଏବେ
ନ ଡରିଲ ଆଉ ଲାଜେ,
ହରଣ କରି ସେ ଗ୍ଲାନି,
ତୃରଣ କରିବା
ଆଶେ ମନୋରଥ
ଆସିଲ କି ହୃଦରାଣି ! । ୪ ।

ଗଗନେ ଝଲେକ
ପୂର୍ଣ୍ଣିମା ଚନ୍ଦ୍ର କି
ହେଲ ତୁମେ ଆତ୍ମହରା,
ଲଗନ ମଙ୍ଗଳ
ଗଲ ସତେ ପ୍ରିୟା
ମଧୁର ମିଳନେ ପରା ।
ମଗନ ଥିଲି ମୁଁ
ଅବିନଶ୍ୱର ମୋ
କାବ୍ୟ-ନାୟିକାର ପ୍ରେମେ,
ଭଗନ କଲ ଗୋ
କହାଁ ମୋ ଧିଆନ
ମୃଦୁହାସେ ଆସି ତୁମେ,
ଅଂଗନେ ମୋହର ଆସି,
ସ୍ପନ୍ଦନ ତବ
ବାରଂବାର କଥାଁ
ଉଲ୍ଲସାଅ ମଦାଳସି ! । ୫ ।

ବାଜିଲା କି ଆଜି
କଣ୍ଠକୁହରରେ
କୋକିଳର କୁହୁ ତାନ,
ସାଜିଲ କିଆଁ ଗୋ
ନବ ମଲ୍ଲୀହାରରେ
ଘନକୁନ୍ତଳ ବଦନ ।
ମଜ୍ଜିଲ କି ମନ
ମଧୁର ପ୍ରଣୟେ
ଦେଖି ଏ ବସନ୍ତ ଶୋଭା,
ହଜିଲା ବିବେକ
ମକରକେତନ
ସୁମନ ଶାୟକେ ଅବା,
ରାଜୀବନୟନା ମୋର,
ଭାଜିଲା କି, ଏବେ
ଦୃଢ଼ ଅଭିମାନ
ସହି ଏ ବିରହ ଘୋର । ୭ ।

ଛନ ଛନ ହୃଦେ
ଆସିଲ କି ଗୃଳ
ନ ସନ୍ତି ବରହ ବ୍ୟଥା,
ଘନ ଘନ କିଆଁ
ବହଇ ନିଃଶ୍ୱାସ
ନ ପାର ଗୋ କହି କଥା ।
ଥନ ଥନ ବାରି
ବୁହାଅ ନୟନୁ
ଇଛି ସେ ପ୍ରଣୟ ସୁଖ,
ଖନ ଖନ କଥା
କୁହ ଗୋ କପାଁଇ
ହୋଇଲ କି ଏବେ ମୂକ ?
କନକକୋଣ ରେ ! ଆଜ,
ଝନ ଝନ ତବ
ନୂପୁର ନିନାଦେ
ଯିବ କି ମୋ ଧ୍ୟାନ ଭଙ୍ଗ ? ୭

ଲାଗିଲା କି ପ୍ରାଣେ
ମହୁଆ ପୁଲକ
ଦେଖି ଏ ଚଇତ ନିଶା,
ଜାଗିଲା ବିବେକ
ହେରି କି ନୟନେ
ଫୋଟନ୍ତା କୁସୁମ ଦଶା ।
ଦାଗିଲା କି ସ୍ମର
ମାରି ଫୁଲଶର
ଭ୍ରମର କୋମଳ ବକ୍ଷେ,
ମାଗିଲା ଗୋ ପ୍ରେମ
ଭାବବିହ୍ୱଳେ ଏ
ଦରଶି କବିର କକ୍ଷେ,
ନାଗରୀ ହୀରା ଗୋ ଏବେ,
ଭରି ଆଶେ କାବ୍ୟ-
ସପତଣୀ ପ୍ରେମୁଁ
ଆଗମିଲା କି ଏ ଠାବେ ।୮।

ବସନ ବନ୍ଧଭଙ୍ଗେ
କଅାଁ ଗୋ ମାନସି !
ମୃଦୁ ହାସେ ଆସ ପାଶେ,
ଅଶନ ଆଶେ କ
ପ୍ରଣୟ-ମନ୍ଦିର
ପାଶୋରିଲ ଅପଯଶେ ।
କଷଣ ଦେଲା କ
ମନମଥ ତା'ର
ସୁମନ ଶରେ ସତତ,
ଶ୍ୱସନ କଅାଁ ଗୋ
ବହେ ଖରତର
ହୁଅ ପୁଣି ବିଚଳିତ,
ନାଚେ ନେ ବିରହ ଜାଳା
ଆସନ ଇଚ୍ଛ କ
ମୋ ଅଙ୍କ-ପଲଙ୍କେ
ହୋଇ ପ୍ରେମେ ମତ୍ତଭୋଳା । ୯ ।

ଅରଜ ନ ପାରି
ସୁଖ ଶାନ୍ତି ଧନ
ରତନ ପୂରିତ ପୁରେ,
ବରଜିଲ ଏବେ
ସତେ କି ସଜନି !
ବଇଭବ ଅକାତରେ ।
ସରଜିବା ଆଶେ
ସୁରସ କେଳି କି
ହେଲି ଏବେ ଉନ୍ମାଦିନୀ,
ତରଜିବା ଲାଗି
ଦରପକ ଦାଉ
ଆସିଲି ମୋ ପାଶେ ଧନି !
ମରକ୍ତ କଣ୍ଠଲୀ ମୋର,
ଜର ଜର ହୋଇ
କାମ ବାଣେ ଏବେ
ଲୋଡ଼େ କି ତା' ପ୍ରତିକାର । ୧୦ ।

ବରନ୍ତି ନ ପାର
　　　　ମିତଣି କି ସତେ
　　　　　　　　ପିକ ମଧୁ କୁହୁ ତାନେ,
କରନ୍ତି ଦାଏ କି
　　　　ସ୍ମୃତି ରତିପତି
　　　　　　　　ଅତି ବେଗେ ଫୁଲବାଣେ ।
ପୀରତି ଲାଳସେ
　　　　କ୍ଷିତିମଣ୍ଡନା ଗୋ
　　　　　　　　ସତେ ଆସିଅଛ ଧାଇଁ,
ମୂରତି ଭ୍ରମର
　　　　ଦିଶେ ଗୋ ପାଣ୍ଡୁର
　　　　　　　　କହ ସତ୍ୟ କାହିଁ ପାଇଁ,
　　　　　　ସୁରତି ଇଚ୍ଛିଣ ଚତୁର,
ଭାରତୀ ନ କହି
　　　　ଦୋହଲାଇ ତନୁ
　　　　　　　　କଟାକ୍ଷ ହାଣୁଛ ମୋତେ । ୧୧ ।

ବଦନ ଚୁମର
କଆଁ ଗୋ ସଜନ !
ଘନ ଘନ ଉଠେ ଥର,
ବଦନ ନ୍ନଟକେ
ବିରହୀ ଚରଣେ
ପୁଲକାର କଆଁ ଗୋର !
ମଦନ ବାଣେ କ
ଘୂରିଗଲା ମଥା
ନ ପାରିଲ ଆଉ ରହି,
ଧଦନ ବରଜି
ପ୍ରେମ-ପାଗଳିନୀ
ଆସିଲ ମୋ ପାଶେ ଧାଇଁ,
ବଂଧନ ସବୁରି ତେଜ,
ରଦନ ପ୍ରକାଶେ
ଆଗମିଲ ଏଥେ
ପୂରୁବ କଥାକୁ ହେଜ । ୧୨ ।

ଦର ଦର ହାସେ
ଆସ କ ମୋ ପାଶେ
କେଳସୁଖ ମନେ ଭାଳ,
ଝର ଝର ଆହା
ଆନନ୍ଦାଶ୍ରୁ ଆଜ
ନୟନୁଁ ଦଅ ଗୋ ଢାଳ ।
ଥର ଥର କଆଁ
ଅବୟବ ଛବ
କୁହ ଗୋ ପ୍ରେୟସୀ ମୋର,
ଛର ଛର ହୁଅ
ଚରସ୍ତୁ ପଗଣେ
ବକ୍ଷସ୍ଥଳେ ରଖି କର,
ବରବରନା ରେ ଆଜ,
ଜର ଜର ହୋଇ
ହରପର ଶରେ
ଆସିଲ ସୁତନୁ ସାଜ । ୧୩ ।

ଚମ୍ପକ ବରନା
ସୁବର୍ଣ୍ଣ ସ୍ୱରଦେ
ଅଙ୍ଗ କବା ଉଚ୍ଚାଟନ,
କମ୍ପିତ ଅଧରେ
ଲୋଡ଼ୁଅଛ ତେଣୁ
ମୋହର ଚୁମ୍ବନଦାନ ।
ସମ୍ପଦ ଲଳସା
ମନୁଁ ତେଜ ତେଣୁ
ଆସିଲ ଘନ କୁଟୀରେ,
ଲମ୍ଫ ଦେବା ଲଗି
ଏ ଦରଘ ବୁକେ
ପ୍ରସାରୁଛ ବାହୁ ଧୀରେ,
ସମ୍ପୁଟକ ପୟୋଧର,
ଦାମ୍ପତ୍ୟ ପ୍ରଣୟ
କବା ମଧୁମୟ
ସମ୍ପ୍ରତି ହେଜିଲ ପର । ୧୪ ।

ବସି ବସି କେତେ
ନଶି ପୁଦ୍ୱାଇ ଗୋ
ଏକାକିନୀ ଫୁଲଗଣଯେ,
ଆସିଲ ମୋ ପାଶେ
ଯୋଷାବର ଏବେ
ବିଶ୍ୱାସ ନୁହଇ ଏ ଯେ,
ହସି ହସି କିଆଁ
ଢାଳ ଅବିରତ
ସରମବୋଳା ସ୍ବଦ୍ୱାଣି,
ଖସି ଖସି ଯାଏ
ପିନ୍ଧାବାସ ତବ
ଅଙ୍ଗୁ କଂପାଇ ଗୋ ଧନ !
ରସିକା ରେ ତୋତେ ଦେଖି,
ଭସି ଭସି ଯାଏ
ଅତୀତ ପ୍ରଣୟ
କଥା ମୋର ମନେ ଗୋଟି ! । ୧୫ ।

ମହାମଣ୍ଡ୍ରନାରେ
ରୁହିଁ ରୁହିଁ ପଥ
ନ ପାଇଲ ଭେଟ ମୋର,
ଦହି ଦେଲା ତନୁ
ସତେ କି ସଜନି !
କାମ ଦେଇ ଦୁଃଖ ଘୋର ।
ବହି ହୃଦେ ଏବେ
ପ୍ରଣୟ ବାସନା
ଆସିଲ କି ମୋର ପାଶେ,
ରହି ରହି ଦୁଃଖେ
ଏକାକିନୀ ଏବେ
ଲୋଡ଼ କାମଚାପ ନାଶେ,
କହି ତ ନ ପାର କଥା,
ଚାହିଁଯାଏ ବୋଲି
ଏ ମଧୁ ଯାମିନୀ
ହୁଅ କି ଗୋ ବଚଳତା । ୧୬ ।

ମୀନନୟନା ରେ
        ବନାଶନ ଆଶେ
                ଘୋର ବରହ ତପନ୍ତି,
କ୍ଷୀନ ବାସ ଖୋଲି
        ପୀନ ପୟୋଧରେ
                ଅରପ ମୋତେ ଝଟନ୍ତି ।
ଛିନ୍ନ କର ଏବେ
        ସକଳ ବନ୍ଧନ
                ତୁଚ୍ଛ ମଣି ଧନରତ୍ନେ,
ଘୃନ କବ ରେ ଗୋ
        ଅରପୁଚ୍ଛ ଚନ୍ଦ୍ର
                ସାଇତି ଥିଲ ଯା' ଯତ୍ନେ,
            ବିନୟ ବଚନ ଛଳେ,
ଲୀନ ହେବା ଲଗି
        ପ୍ରଣୟ-ସାଗରେ
                ଲୋଟିଛ ମୋ ପଦତଳେ । ୧୭ ।

ଅଧୀର କାହିଁ ଗୋ
ବିରହ-ବିଧୂର
ସଧୀରେ ଶୁଣ ମୋ ବାଣୀ,
ବିଧିର ବିଧାନ
କେ କରିବ ଆନ
ନ ଶୋଚ ଗୋ ଚନ୍ଦ୍ରାନନ !
ରୋଧିଲି କେ ତବ
ଆଗମନ ପଥ
ଏ ଅବଧି ଥିଲି କାହିଁ,
ବାଧିଲି ପରାଣେ
ସଜନ ! କି ଏବେ
ନିଃସଙ୍ଗ ଜୀବନେ ରହି,
ବଧିବ ଥିଲି କି ପ୍ରିୟା,
ମଦିର-ମୂର୍ଚ୍ଛନା
ଢାଳେ ଯା ଏ ପାରେ
ଆଲୋଡ଼େ ନା ତବ ହିଆ । ୧୮ ।

ସୁର ସୁନ୍ଦରୀ ଗୋ !
ଆଗମିଲ ପ୍ରାଣେ
ବରଜ ସକଳ ଆଶା,
ପୂର୍ବୋଷରେ ମୋର
ଲଜ କର କିଆଁ
ସଜସରସିଜ ଦୃଶା ।
ମୃରୁଛୁ ନ ପାର
ସଙ୍ଗେ କ ମାନସୁଁ
ମଧୁର ପ୍ରଣୟ ସ୍ମୃତି,
ଦୁରୁଗମ ପଥେ
ଆଗମିଲ ପ୍ରିୟା !
ନ ଜାଗିଲ ମନେ ଖିତ୍ତି,
କୁରଂଗ-ନୟନା ସଙ୍ଗେ,
ଜୂର କର ମୋର
ବିବେକ, ପୂରଣ
କରିବ କ ମନୋରଥେ । ୧୯ ।

ବୁହାନା ବୁହାନା
ବାରଜାକ୍ଷି ! ବାର
ବାରେ ଗୋ ଆଜ ମୋ ପୁରେ,
ରୁହନା ରୁହନା
ସଜନ ! ମୋ ପାଶେ
ଯାଅ ଦୂରେ, ବନ୍ଧୁ ଦୂରେ,
କୁହନା କୁହନା
ଶ୍ରବଣେ ମୋହର
ଅଭିମାନ ଭରା ବାଣୀ,
ଗୁହଁନା ଗୁହଁନା
ଭୁହାଇ ଭୁହାଇ
କୁଟିଳ କଟାକ୍ଷ ହାଣି,
ଗୁହାରି ନ କର ଗୋରି !
ପୁହାଏ ମୁଁ ନଣି
କାବ୍ୟ-ପ୍ରିୟା ଭୁଲେ
କରଛୁ ସେ ଚଉ ଗେହ୍ରେ । ୨୦ ।

---

# କୁହୁକିନୀ

କଳସୀ କାଖେ ଧୀରେ
ଅଳପ ବୟସୀରେ !
ଚଳ ଗୋ ପୁରେ ଜଳ ଘେନି
ଢଳ ଢଳ ନୟନେ
ଦୋଳାଇ ଅପଘନେ
ଚୁହଁ କଆଁ ଗୋ କୁହୁକମା ।୧।

ଏହି ଛଟିମା ଛଟେ
ସହି ରେ ନିତ ଭେଟେ
କହି ନପାରେ ମନକଥା,
ଦହି ଦିଏ ମୋ ତନୁ
ବହି କ୍ରୋଧ ଅତନୁ
ବିରହୀ ପ୍ରାଣେ ଜାଗେ ବ୍ୟଥା । ୨ ।

ଆନ କେ ଅଛି ଗୋରୀ
ମାନସୀ ରେ ତୋ ପରି !
ଦାନ କରିବ ପ୍ରେମରସ,
ପାନ କରି ମୁଁ ଯେବେ
ଗାନ ଶୁଣିବ ସେବେ
ପାଶୋରି ଦୁଃଖ ଅହର୍ନିଶ । ୩ ।

ତର ତର ଅନାଇ
ଥରକୁ ଥର ସହି
ସରମବୋଳା ଦୃଷ୍ଟି ଢାଳି,
ଦରହାସ ଫୁଟାଇ
ଅଧରେ ପ୍ରିୟ ସହି
ମରମ ମୋର ଦିଅ ଜାଳି । ୪ ।

କନକ ଗୋରି ! ତୋର
ଝନ ଝନ ନୂପୁର
ମନ ନିଏ ଗୋ ମୋର କିଣି,
ଛନ ଛନ ପଗଣେ
ଅନାଇ ଏଣେ ତେଣେ
ଖୋଜୁ କି ମୋତେ ଚନ୍ଦ୍ରାନନ । ୫ ।

ସଙ୍ଗେ ତୋ ନାହିଁ କେହି
ରଙ୍ଗେ ଯାଉ ରେ ଭୁଲି
ଚଙ୍ଗ ଚଙ୍ଗ କଅାଁରେ ଗୋରି !
ଅଙ୍ଗ ମୋ ଉଚ୍ଚାଟନ
ଭଙ୍ଗ ମୋର ଧିଆନ
ହେଲୁ କଅାଁ ଗୋ ତୋତେ ହେରି ।୬।

ଶାଢ଼ୀଟି କବା ରଙ୍ଗେ
ବେଢ଼ି ଯତନେ ଅଙ୍ଗେ
ଭଡ଼ ରଦନେ ପିନ୍ଧାବାପ,
ପଡ଼ିଲେ ମୋ ନୟନ
ଛୁଡ଼ିଯାଏ ପରାଣ
ଲୋଡ଼େ ମୁଁ ତୋ ମଧୁ ପରଶ । ୭ ।

ପ୍ରିୟା ଗୋ ତୋତେ ଦେହର
ହିଆ ମୋ ଉଠେ ଥର
ଧିଆନ ଯାଏ ମୋର ଭାଜି,
ଠିଆ ହୋଇ ମୁଁ କ୍ଷଣେ
ଭାଳେ ଦରସ ମନେ
ଖିଆଲ ମନ୍ତ୍ର ପେବେ ଆଜି ।୮।

କାଞ୍ଚନ ଗୋରି ! ତୋର
ଘଞ୍ଚ କୁଚଯୁଗଳ
ସୁଘଞ୍ଚ ବସ୍ତ୍ରାଞ୍ଚଳ ଭେଦି,
ଗୃଞ୍ଜଲ୍ୟ ଆଣେ ପ୍ରାଣେ
କଞ୍ଚିତେ ତା' ଦର୍ଶନେ
ଗନ୍ତପଥ ମୋ ହୁଏ ରୋଧି ।୯।

ତୃଷିତ ପ୍ରାଣେ ଯୋଷା
ପୋଷିଛୁ ହୃଦେ ଆଶା
ଘୋଷିଣ ମୋହନ ମନ୍ତ୍ରର,
ତୋଷିବାକୁ ମୋ ମନ
ଖୋସିଛୁ କି ବହନ
ଗନ୍ଧରେ ସଜମଲ୍ଲୀହାର ।୧୦।

ଦେଖିଲେ ତୋତେ ନେତ୍ର
ସଖି ମୋ ଚଲାପଥେ
ଲଖି ରହେ ସେ ରୂପ ମନେ,
ଆଖି ଆଗେ ମୋ ଭାସି
ବକ୍ଷିପ୍ତ ଶତ୍ରୁ ନାଶି
ଦେବପଦ୍ମ ହୁଏ ତା' ଚରଣେ । ୧୧ ।

ସ୍ମରୁହାସୀ ଗୋ ପ୍ରିୟେ !
ସରୁ ଭ୍ରୂଲତା ଦ୍ୱୟେ
କାରୁଣ୍ୟ ଦୃଷ୍ଟି ଢାଳ ବାରେ
ଧାରୁ କାହିଁ ମୋ ମନ
ଦାରୁଣ ଦୁଃଖ ପୁଣ
ଦେଇ ଏ ଦରଦୀ ଅନ୍ତରେ । ୧୨ ।

କଣୋଈ ଗୋ ମୁଁ ତୋତେ
ପାଶୋରିଲେ ହେଁ ଯେତେ
ଭାସ ଉଠେ ମୋ ହୃଦାକାଶେ,
ସୁକେଶୀ କାହିଁ ଏତେ
ଆସି ମୋ ଚଲା ପଥେ
ବସ ଅନାଇ ଧର୍ଯ୍ୟଶ୍ୱାସେ । ୧୩ ।

ବାଣ ବୁହାଇ ନେତ୍ରେ
ନାଗରୀରତନ ସତେ
ଘାଣ ଦୁଅ କି କାମବାଣେ,
ଗୃଣ ଚକ୍ଷୁ ମିଳନେ
ଠାଣ ନୟନ କୋଣେ
ଛୁରୀ ମାର ଗୋ ଏ ପରାଣେ । ୧୪ ।

ରମଣୀବର ତୋର
ଗମନ କି ସୁନ୍ଦର
ନମିତ ମୁଖେ ଯାଉ ଧୀରେ
ଝମ ଝମ ତୋ ବଳା
ଚମକ ଦିଏ ବାଳା
ଯମକେ ବାଜ ତୋ ପୟରେ । ୧୫ ।

ଗୋଷ୍ଠ ଚର କଆଁ ପୁଣ
ଚୈର କରୁ ମୋ ମନ
ତୋରଣ ପାଶେ ହୋଇ ଉଭା,
ଧୀରେ ଠାଣ ନୟନେ
ନିରେଖି ଏକଧ୍ୟାନେ
ବିରହ ବ୍ୟଥା କହୁ ଅବା । ୧୬ ।

ନାଚ ନାଚ ଗୋ ଭୃଙ୍ଗ
ପ୍ରୀତି ମନେ ପକାଇ
ଭ୍ରାନ୍ତ ଚେକଣ ମନୁଁ ଚୋର,
ମିଛଣି ! ଆସୁ ଭୁଲ
ବଢ଼ି ଯାଏ ଗୋ ବୋଲି
ଅବା ଏ ବସନ୍ତ ମଧୁର ।୧୭ ।

ଜାଣୁ କି ଗୋ କୁହୁକ
ଆଣୁ ମୋ ହୃଦେ ଦଳ
ଟାଣ ମୋହର ଯାଏ ଭଙ୍ଗି,
ବାଣୀ ତୋ କି ମଧୁର
ଆଣେ ଉଲ୍ଲାସ ଚୋର
ଠାଣି ମୋ ଅଙ୍ଗେ ଗଢ଼ରଙ୍ଗି ! ।୧୮।

ଓଢ଼ଣା ତଳୁଁ ଧୀରେ
କାଢ଼ି ବଦନ ଥରେ
ଢଢ଼ ଢଢ଼ କଆଁ ରେ ବାଳା,
ଆଡ଼ ଆଖିରେ ମୋରେ
ଚଢ଼ତ ଭୁଲି ଥରେ
ଭୃହିଁ ଫେରାଉ ପୁଣି ଡୋଳା । ୧୯ ।

ପଡ଼ି ସୋହାଗ ଲାଗି
ମତି ଉଠିଲା ଜାଗି
ଅତି ବିରହ ଦୁଃଖ ସହି,
ରତିନାୟକ ବାଣ
ଭାଙ୍ଗିଲା ମନପ୍ରାଣ
କହିବୁ ତାକୁ ଦେଖୁ ରହି । ୨୦ ।

---

# ଯକ୍ଷ ଆରେ ମୁଁ ଯକ୍ଷ

ଯକ୍ଷ ଆରେ ମୁଁ ଯକ୍ଷ,
ବକ୍ଷେ ମୋହର ଲକ୍ଷ ବେଦନା
ଛୁଡ଼ୁଛୁ ମୋ ଆଶା-ପକ୍ଷ ॥
ମଉଳୁଛି ମୋର ମଧୁର-ପ୍ରଣୟ-ଲଗ୍ନ,
ହୃଦୟ-ବୀଣା ମୋ ଯୁଗପତ୍ ଆଜ ଭଗ୍ନ,
ସର୍ପିଣୀ ଅଭିଶାପେ,
ଦୁଃଖେ ଜୀବନ ଯାପେ,
ଯୁବତୀ ପ୍ରିୟା ମୋ ଦୂରେ ଆଜ ବହୁଦୂରେ,
ହୃଦୟ-ତନ୍ତ୍ରୀ ଝଙ୍କପେ କରୁଣ ସୁରେ,
ନାହିଁ ମୋ ମାନସେ ଶାନ୍ତ,
ଲୁଟିଛି ଦଇବ ହର୍ଷ ମୋହର
ତୁଟିଛି ଅଙ୍ଗ କାନ୍ତ;
ଘୂରି ବୁଲେ ମୁହିଁ ତାରକା ଯେସନ୍ତେ
ବିଚ୍ୟୁତ ହୋଇ କକ୍ଷ;
ଯକ୍ଷ ଆରେ ମୁଁ ଯକ୍ଷ । ୧ ।

ପ୍ରିୟା ନାହିଁ ପାଶେ                 କାହା ଭୁଜେ ମୋର
ଭୁଜକୁ ଦେବ ରେ ଛନ୍ଦ,
ଚିନ୍ତା ରାଜ୍ୟ-                 କାରାଗାରେ ମୋର
ମାନସ ହୋଇଛି ବନ୍ଦୀ,
ଅମ୍ବୁଜ ସମ ନେତ୍ର ଯୁଗଳେ ତା'ର,
ବହୁଥିବ ସଦା ଉଷ୍ଣ ଅଶ୍ରୁଧାର,
ବିରହ-ବିଧୁରା ପ୍ରିୟା ମୋ ପ୍ରଣୟ-ଲଗ୍ନା,
ହେବଣି ଚିନ୍ତା ଅଗାଧ ସଲିଳେ ମଗ୍ନା,
ଦୀର୍ଘ ଦିବସ ରଜନୀ,
ଯାପିବ କେସନେ ସଜନୀ,
ମନ୍ଦ ଦଇବ                 ଛନ୍ଦ ବିରଚି
ହେଲା ଆସି ପ୍ରତିପକ୍ଷ;
ଯକ୍ଷ ଆରେ ମୁଁ ଯକ୍ଷ । ୨ ।

ଅଙ୍ଗ ମୋହର
ଦୁର୍ବଳ ଆଜ କ୍ଷୀଣ,
ଭଙ୍ଗ ସରାଗ
ଚିନ୍ତାରେ ଗଲା ଦିନ,
ତନ୍ୱୀ, ସୁଶ୍ରୀ, ସୁକୁମାରୀ ମୋର ବାଳା,
ସହିବ କେସନେ ବିରହ ଗରଳ ଜ୍ୱାଳା,
କମ୍ବୁକଣ୍ଠୀ ସହି ଏ ଦୁଃଖ ଘୋର,
ବଞ୍ଚିବ ସତେ ? ଧରତେ ନ ହୁଏ ମୋର,
ମନ୍ମଥର ଏ ଦାଉ
ସମ୍ଭାଳିବ କେ ଆଉ
ଆନ କେଉଁ ନାରୀ ନହିବ କି ଜଗତେ
ମୋ ସଜନି ସମକକ୍ଷ;
ଯକ୍ଷ ଆରେ ମୁଁ ଯକ୍ଷ । ୩ ।

ବିରହେ ମୋର ଯେ
ଦିନକୁ ମଣଇ ବର୍ଷ,
ଏତେଦିନେ ଥିବ
ମନେ କି ତାହାର ହର୍ଷ,
ଭାଜି ପଡ଼ୁଥିବ ଚିନ୍ତାରେ ମୋର ସହି,
ବନ୍ଦିନୀ ସମ ଏକାକିନୀ ପୁରେ ରହି,
ଦୁଃଖରେ ଯେବେ ଅନ୍ତର ହେବ ହାଣି,
କା ଆଗେ କହିବ ତାହାର ମର୍ମବାଣୀ;
ଉଷ୍ଣ ଲୋତକଧାର
ପୋଛିବ ପଣତେ ତା'ର
ସର ଲବଣୀକୁ ଫିଙ୍ଗି ସେ ରୋଷେ
ଗରଳେ ମଣିବ ଭକ୍ଷ୍ୟ;
ଯକ୍ଷ ଆରେ ମୁଁ ଯକ୍ଷ । ୪ ।

ବନ୍ଧୁଲି ଅଧରେ
ମଧୁର ବଚନ ଛଳେ,
ଆଙ୍କିବ କେବେ
ଚୁମ୍ବନ କୁତୂହଳେ,
ପାଶୋରିବ ମୋର ସକଳ ଦୁଃଖ, ଦୈନ୍ୟ,
ମଣିବ ନିଜକୁ ରସିକଜଗତେ ଧନ୍ୟ;
ତୋଳି ଚକ୍ଷୁଁ କୋଳେ
ବସାଇବାର ସେ ଛବି,
ବର୍ଣ୍ଣି ପାରିବ
କହ ଅବା କେଉଁ କବି ?
ରସବଣ୍ଟୀ ପ୍ରିୟା ବିନା,
ସ୍ୱପ୍ନ ସବୁ ଏ ସିନା !
ଧ୍ରୁବତାରା ସେ ଯେ ମୋ ହୃଦ-ଆକାଶେ
ତା ବିନୁଁ ଭ୍ରଷ୍ଟ ଲକ୍ଷ୍ୟ;
ଯକ୍ଷ ଆରେ ମୁଁ ଯକ୍ଷ । ୫ ।

ଭଗ୍ନକୁଟୀର ମୋର "ରାମଗିରି" ଶୃଙ୍ଗ,
ଚୌଦିଗେ ଘୁଏ ଦୁଃଖ ବଉଦ ଭୃଙ୍ଗ,
ଶଙ୍କା ଉପୁଜେ
ଚିତ୍ତ-କୁହରେ ମୋର,
ବଞ୍ଚିବ କି ସେ
ସହି ଏ ଦୁଃଖ ଘୋର,
ଶଯ୍ୟାଶାୟିନୀ
ହେବ ସେ ହର୍ଷ ଚେଳ,
ରହିଁଥିବ ପଥ
ସଙ୍ଗମ ମୋର ହେଳ,
ଦୁଃଖେ ମୋ ନବକାମିନୀ,
ଯାପିବ ଦୀର୍ଘ ଯାମିନୀ,
ଦୁର୍ବାର ସେହି ମନ୍ମଥ ବାଣେ
କମ୍ପୁଥିବ ତା ବକ୍ଷ;
ଯକ୍ଷ ଆରେ ମୁଁ ଯକ୍ଷ । ୬ ।

ଚମ୍ପାବରଣ
ଅଙ୍ଗ ହେବଣି ଫିକା,
ଶଓପୁରେ ତା'
ମାନସ ମୋହର ଝିକା,
ଚଣ୍ଡ ଦଇବ ଅକାଳେ ଦେଲା ରେ ଦଣ୍ଡ,
ମଣ୍ଡିବ ସତେ ଚୁମ୍ବନେ ପ୍ରିୟାଗଣ୍ଡ !
ଉନ୍ନତପୟୋଧରା ମୋ ନମ୍ରଗାମୀ,
ସେହ୍ମ ମୋ ହର୍ଷ, ଶାନ୍ତ, ମୁକ୍ତ ଦାମୀ;
ସେ ଯେ ମୋ ପ୍ରଣୟ-ବନ୍ୟା,
ରମଣୀଜଗତେ ଧନ୍ୟା,
ନ ପାଏ ଭାଷା ତା' ରୂପବର୍ଣ୍ଣନେ
ହୁଏ ପଛେ ଯେତେ ଦକ୍ଷ;
ଯକ୍ଷ ଆରେ ମୁଁ ଯକ୍ଷ । ୭ ।

ବର୍ଷ ପୂରିବ
ଆଉ ଗୃଣ ମାସ ପରେ;
ହର୍ଷ ଲଭିବ
ପ୍ରିୟାକୁ ପାଇ ମୁଁ ଘରେ,
ଖଣ୍ଡନ ହେବ
ଦୁର୍ବାର ଅଭିଶାପ,
ଘୁଞ୍ଚିବ ମୋର
ସକଳ ହୃଦୟ ତାପ;
ସଦ୍ମେ ଭେଟିବି ପଦ୍ମନୟନା ମୋର,
ପାଶୋର ଦେବ ଏ ବିରହ ଦୁଃଖ ଘୋର;
କାନ୍ତାକୁ ଥାପି କୋଳେ,
ବଞ୍ଚିବ ନଶି ହେଳେ,
ଲୋଡ଼େ ନା କିଛି ଧନ ବା ରତ୍ନ
ଇଚ୍ଛେ ସଜନ-ସଖ୍ୟ;
ଯକ୍ଷ ଆରେ ମୁଁ ଯକ୍ଷ । ୮ ।

---

# କଳ୍ପନା କୁଞ୍ଜେ

କଳ୍ପନାର ଏ କୁଞ୍ଜେ ବସି ମୁଁ
ବିଜନେ ଦରଶି କବି,
ଅଙ୍କେ ଥାପି ମୋ କାବ୍ୟ ନାୟିକା
ଆଙ୍କେ ବିରହ ଛବି ।
ଦିନ ପରେ ଦିନ ମାସ ପରେ ମାସ
ଯାଏ ଗୋ ବିତି,
ସଜନି ଅଙ୍ଗ ସଙ୍ଗଲାଗି ମୁଁ
ଝୁରଇ ନିତି,
ହାୟରେ ହାୟ !
ଶୀର୍ଣ୍ଣକାୟ,
ପ୍ରେମୀ ଲାଗି,
ମର୍ମେ ବେଦନା ଉଠଇ ଜାଗି,
ମନ୍ଦ ବିଧି
ଏହା କି ଥିଲ ମୋ ଭାଗ୍ୟେ ଲିଖି ? । ୧ ।

ଯଉବନ ହେଲା                    ବ୍ୟର୍ଥ ମୋହର
ଗଲା ରେ ଦିନ,
ପ୍ରିୟା ମିଳନର                    ଚିନ୍ତାରେ ସଦା
ହେଲ ମୁଁ ଲୀନ,
ବଞ୍ଚି ରହିବ ଆଉ ମୁଁ କଥାଁ,
ଜଳେ ଅବିରତ ଅନ୍ତରେ ଯେବେ
ବିରହ-ନିଆଁ ।
ଯୁବତୀ ପ୍ରିୟାର ସଙ୍ଗ ତେଜି,
ରଖିବ ପରାଣ କି ସୁଖ ହେଜି,
ନବ ଯଉବନୀ ସୁଶ୍ରୀ ବାଳା,
ପିନ୍ଧେ ପବାଣ, ବକ୍ଷେ ମାଳା,
ବିରହେ ତା’ର
ଅଶ୍ରୁଧାର,
ଯାଏ ମୋ ବହି,
ଏ ଗୁରୁ କଷଣ ନପାରେ ସହି,
କା’ ଆଗେ ଦୁଃଖ କହିବ,
ନିରୁପାୟ ହୋଇ ସିନା ଏ ଦଣ୍ଡ ସହିବ । ୨ ।

ଜଟଳ ଅନ୍ଧରନ୍ଧ ବିରହ-ବହ୍ନି
ବିସ୍ତାର କରି ଶିଖା'
ଉଚ୍ଚ ଆଶାର ରକ୍ତିମା ସବୁ
ପଡ଼ୁଛି ତା” ପାଶେ ଫିକା ।
ଦିନ ପରେ ଆସେ ରାତି,
ମନେ ପଡ଼େ ମୋର ସାଥି,
ଛୁଟିଛି ଜୀବନରଙ୍ଗ,
ସଙ୍ଗ ହୋଇଛି ଭଙ୍ଗ
କେବଳ କାବ୍ୟ ନାୟିକା ଅଙ୍କେ ଥାପି,
ପାରିବ କି ମୋର ଦୁର୍ବହ କାଳ ଯାପି,
କଳ୍ପନାର ସେ ଛନ୍ଦେ ଛନ୍ଦେ
ପ୍ରିୟାର କଥା,
ଉଙ୍କି ମାରି ମୋ ଚିତ୍ତଗହନେ
ଦିଏ ଗୋ ବ୍ୟଥା ।
ଜୀବନ ବୀଣାର କରୁଣ-ତନ୍ତ୍ରୀ
ଉଠେ ମୋ ଥରି,
ଅଙ୍ଗ ଘଟୁଁ ମୋ ଆପୁଷ୍ଟ-ସଲିଳ
ପଡ଼େ ଗୋ ଝରି । ୩ ।

ଜ୍ୟୋଛନା-ଧଉତ ଶୁକ୍ଳ ପକ୍ଷ
ମଧୁର ନିଶି,
ଚନ୍ଦ୍ରମା ଛଳେ ପ୍ରିୟା ମୁଖ ଛବି
ଯାଏ ଗୋ ଦିଶି ॥
କର୍ମେ ଶ୍ରାନ୍ତ,
ଦୂରେ, ବହୁଦୂରେ ପରାଣସାଥି ॥
କୋକଦମ୍ପତି କରୁଣ ଶବ୍ଦ ଶୁଣି,
ମାନସେ ତାଙ୍କ ବିରହ ଦୁଃଖ ଗୁଣି,
ଶୂନ୍ୟ ଲାଗେ ଏ ବିଶ୍ୱ,
ମଣଇ ନିଜକୁ ନିଃସ୍ୱ;
ଛିଡ଼େ ମୋର ଆଶା-ପକ୍ଷ,
ଭ୍ରଷ୍ଟ ହୁଏ ମୋ ଲକ୍ଷ୍ୟ;
ଭାସି ଉଡ଼େ ମନ
ଅଜଣା ରାଇଜ ପାରେ,
କଳ୍ପନାରଥ
ଆରୋହଣ କରି ବାରେ । ୪ ।

ସଙ୍ଗହୀନ କେ ପକ୍ଷୀ ବିଳପି
କରୁଣ ସୁରେ,
ଖୋଜେ ତା'ର ସାଥି ଅସୀମ ବେଦନା
ଥାପି ତା' ଉରେ ।
କମ୍ପାଇ ଦିଗମାନ,
ତୋଳେ ସେ କରୁଣାଗାନ;
ମୋର ପ୍ରାଣେ ସିନା
ଉଦ୍‌ବେଗେ ଯାଏ ଧାଇଁ,
ପ୍ରିୟାର ଅଙ୍ଗ
ସଙ୍ଗ ଲଭିବା ପାଇଁ,
ପଥହରା ମୁହିଁ ସିନା,
ପ୍ରିୟାର ସଙ୍ଗ ବିନା,
କଳକଳ ନାଦେ
ତଟିନୀ ଯାଏ ଗୋ ବନ୍ଧୁ,
ନିର୍ଜନେ ବସି
ଦେଖେ ସେ ଦୃଶ୍ୟ ରନ୍ଧୁ । ୫ ।

ଆମ୍ର ବକୁଳ ଗହନେ କୋକିଳ
ମଉନେ ରହ୍ନି;
ପଞ୍ଚମ ତାନେ 'କୁହୁ' 'କୁହୁ' ବାଣୀ
ଯାଏ ଗୋ କହି ॥
ପିକ ଡାକେ ରହି ରହି,
ବେଦନା ନ ହୁଏ କହି,
ଶାଣିତ ଅସ୍ତ୍ରେ
ବକ୍ଷ ଛେଦନ ଭଳି,
"କୁହୁ" ବାଣୀ ମୋର
ମର୍ମେ ଯାଏ ଗୋ ଗଳି ।
ମନେ ପଡ଼େ ଯେବେ ପ୍ରିୟତମା ହୃଦ
ହୁଅଇ ହାଣି,
ପିକ ବାଣୀଠାରୁ ସୁମଧୁର ତା'ର
ମରମ ବାଣୀ ।
ହୃଦୟ-ତନ୍ତ୍ରୀ ଥରେ,
ପ୍ରିୟା ଲାଗି ଝୁରି ମରେ । ୭ ।

ସୁବାସିତ କେତେ ସୁମନେ ପୂରିତ
ମୋର ଏ କୁଞ୍ଜ,
ଚଉଦିଗେ ଆହା ବେଢ଼ି ଥାନ୍ତି ସେ
ଭ୍ରମର ପୁଞ୍ଜ,
ମନ୍ଦସମୀରେ ପୁଷ୍ପ ଦୋହଲୁ ଥାଏ,
ଅଳି ଗୁଂଜନେ ଯେତେ କି ଲଜ୍ଜା ପାଏ,
ମଧୁ ଗୁଂଜନଛଳେ,
ଗୂଢ଼ ବାଣୀ କହି ଅଳି ସତେ ଅବା
ଲୋଟେ ତା' ପୟର ତଳେ ।
ଦର୍ଶନେ ତାହା ମାନସେ ଜାଗେ ମୋ
ଅଜ୍ଞାତ କଥା,
ଚୁମ୍ବନ କାଳେ ସରମ ବୋଳା ତା'
''ନାହିଁ ଯା'' କଥା ।
ତା ବିନୁ ଜଗତ ଶୂନ୍ୟ ସିନା ମୁଁ ମଣେ,
ଆଶ୍ୱାସିବାକୁ ନାହିଁ ମୋର କେହି ଜଣେ,
ସେ ମୋ ଜୀବନର ସାହା
ତା ବିନୁ ନ ପାଏ ଗାହା । ୭ ।

ଜୀବନ-ପାନ୍ଥୁଁ ଯଉବନ-ମଧୁ
ପଡ଼େ ରେ ଝରି,
ଅକାଳେ ମୋହର ମନକପୋତଟି
ଯାଏ ରେ ମରି ॥
କାହିଁ ରେ କାହିଁ,
ଆଉ କି ପ୍ରିୟାକୁ ପାଇବ ନାହିଁ ।
କଳପନାର ଏ କୁଞ୍ଜେ ବସି ମୁଁ
ଗାରବେ ସିନା,
ରଚଇ କବିତା ବିଜନେ ଯୁବତୀ
ପ୍ରିୟାର ବିନା ।
କହ ରେ ଦଇବ ! କାହା ପାଇଁ ମୁହିଁ
ଦୁର୍ଦ୍ଦିନେ ଆଉ ବଞ୍ଚିବ,
ଜହର-ପାନେ ଆୟୂଷ-ସଲିଳ
କାହା ପାଇଁ ଆଉ ସଞ୍ଚିବ । ୮ ।

# ସପ୍ତ-ସ୍ମୃତି

ପ୍ରିୟାକୁ ନେଇ ଯେବେ ବଦେଶେ ରହେ,
ସତତ ସ୍ମୃତି ମୋର ପରାଣେ ଦହେ ॥
ଆଦ୍ୟ ଭେଟେ ମୋ ଜୀବ-ସଙ୍ଗିନୀ ସାଥେ,
ଚିର କଳ୍ପିତ ସେହି ବାସର-ରାତେ ।
ନଣୀଥେ ପ୍ରିୟା ଯେବେ ଆସିଲା ପୁରେ,
ଅକୁହା ପୁଲକ ମୋ ଜାଗିଲା ଉରେ ।
ଥରେ ମାତର ଦୃଷ୍ଟି ମୋତେ ନ ଢାଳି
ଗୃହକୋଣେ ମଉନେ ବସିଲା ବାଳୀ ।
ବସ୍ତ୍ର-ବଉଦେ ମୁଖ-ଚନ୍ଦ୍ରମା ଢାଙ୍କି
ଦେଲା ମୋ ହୃଦେ ମଧୁ ଛବି ସେ ଆଙ୍କି ।
ତନ୍ଦ୍ରୁ ମୁଁ ତଳପକୁ ତୋଳିଲି ବେଳେ,
ନ ରଖିଲା ମୋ କଥା ସଜଳ ହେଲେ ।
ଯେତେ ବୁଝିଁ କହିଲି ମୋ କମ୍ବୁ-କଣ୍ଠୀ
ନ ଫିଟାଇଲା ତା'ର ଗୁମାନ-ଗଣ୍ଠି ।
କୋମଳ ଗଣ୍ଡେ ଲଭି ଚୁମ୍ବନପାନ,
ସରଗେ ଭୁଞ୍ଜାଇଲି ତାହାକୁ ପାନ ।
ପୁଲକେ ଥରଗଲା ଏ ମୋର ତନୁ
ଆହା ସେ ମଧୁସ୍ମୃତି ନ ଯିବ ମନୁଁ । ୧ ।

ଅଳପ ଦିନ ଗଲା ଏସନ ବିତି,
ପ୍ରିୟା ଗହଣେ ନିଶି ପୁହାଏ ନିତି
ହସି ଉଠିଲା ମୋର ଗୃହ ଅଟରେ
କମଳା ବିଜେ ମୋର ଦୀନ କୁଟୀରେ ।
ନ ପୁରୁଣୁ ମାତର ଗୋଟିଏ ମାସ,
ଜଇଷ୍ଠ ପୂର୍ଣ୍ଣିମୀର ହେଲା ପ୍ରକାଶ ।
ପୂର୍ଣ୍ଣିମୀ ଆମନ୍ତ୍ରଣ ଆସିଲା ଯେଣୁ
ପିତୃ ସଦନେ ପ୍ରିୟା ଚଳିଲା ତେଣୁ ।
ଆମନ୍ତ୍ରିତ ଜାମାତା ରୂପେ ସନ୍ଧ୍ୟାରେ
ଚଳିଲି ପ୍ରିୟା ପୁରେ ହରଷେ ବାରେ
ପ୍ରିୟା ସଦନେ ତାଙ୍କୁ ଚିନ୍ତ ମାନସେ
ଏକାକୀ ଶୟନ ମୁଁ କଲି ବିରସେ ।
ସ୍ୱପନେ ଦେଖୁଥିଲି ସଖୀକୁ ଯେବେ
ସଧୀରେ ଆସି ପଦ ପରଶେ ତେବେ ।
ଚକିତେ ଚମକି ମୁଁ ଉଠିଲି ଖରେ
ଦେଖିଲି ପ୍ରିୟା ଉଭା ମୋର ପାଶରେ ।
ବସାଇ ଦେଲି କୋଳେ ଚିବୁକ ଧରି,
ମଣିଲି ରଙ୍କ ରତ୍ନ ଲଭିଲା ପରି । ୨ ।

ଆଷାଢ଼ ମାସେ ନବଘନ ଉଦୟେ,
ଅଜଣା ପୁଲକ ମୋ ହେଲା ହୃଦୟେ ।
ମେଘ କୋଳେ ଚପଳା ସୁଷମା ଦେଖି,
ମାନସ ପଟଳେ ମେ ଛବି ମୁଁ ଲେଖି ।
ପ୍ରିୟାକୁ କେତେ ମୃଦୁବାଣୀ କହିଲି,
ପଟୁ ଚଟୁ ବଚନେ ମନ ମୋହିଲି ।
ଗଳାରେ ମଲ୍ଲୀମାଳ ତା'ର ସଜାଇ,
ଆଲିଙ୍ଗନେ ଚୁମ୍ବନେ ମନ ମଜାଇ ।
ଚନ୍ଦ୍ରମୁଖୀକୁ କଲି ଚନ୍ଦ୍ର ଚୁମ୍ବନ ।
ଟଳାଇ ମାନ ଭୁଲାଇଲି ତା' ମନ ।
ବନ୍ଧୁ ଯତନେ ପ୍ରିୟା ରାଜି ହୋଇଲା,
ବପୁଶୋଭେ ମୋହର ମନ ମୋହିଲା ।
ଲାଜେ ନୟନ ଦୁଇ ମୁଦିଲା ତା'ର
"ନାହିଁ" "ନାହିଁ" ଉଚ୍ଚାରେ ବାରକୁ ବାର ।
ସେକାଳ ସୁଷମାର ଉପମା ନାହିଁ
ଅସୀମ ତପୋବଳେ ସେ ସୁଖ ପାଇ ।
ଦୋହଲିବାର ତା'ର କୋମଳ ତନୁ,
ଆହା ସେ ମଧୁ ଛବି ନ ଯିବ ମନୁଁ । ୩୯ ।

ଶ୍ରାବଣେ ଘନ ଘନ ବରଷା ଧାର
ନବ ଜୀବନ ଆଣେ ଜଗତ ସାର ।
କଳା ବଉଦ ମାଳ ବିହରେ ନଭେ,
ସେ ଦୃଶ୍ୟ ଦେଖି ପ୍ରିୟା ହରଷ ଲଭେ ।
ଦିନେ ସେ ଏକାକିନୀ ପ୍ରଦୋଷ କାଳେ,
ବିଲୋକୁ ଥିଲା ସେନ୍ତ ଜଳଦମାଳେ ।
ବକମାଳ ଶବଦ କରି ସଘନ,
ବାହୁଡ଼ୁଥିଲେ ନିଜ ନୀଡ଼େ ବହନ ।
ଦୁଇ ଊରୁରେ ଦୁଇ ଭୁଜକୁ ରଖି
ମୁଗ୍‌ଧ ନୟନେ ଦେଖୁଥିଲି ମୋ ସଖୀ !
ମୀନ ନୟନା ପୀନ ଉରଜ ଦ୍ୱୟ
ଦର୍ଶନେ ମନ ମୋର ହେଲା ଅଥୟ ।
ତା' ଘନଜଘନ ମୋ ଧୈର୍ଯ୍ୟ ନାଶିଲା,
ଅଜଣା ପୁଲକ ମୋ ଦେହେ ଆସିଲା ।
ପ୍ରିୟା ରୋଷ ବଚନେ ନ ଦେଇ ମନ
ସୁରତରସେ ମାତିଥିଲି ବହନ ।
ମାନସେ ଭାସିଯାଏ ଯେବେ ସେ ଛବି;
ବିନା ମେଘେ ମୋ ଶିରେ ପଡ଼ଇ ପବି । ୪ ।

ଚଇତ୍ର ମାସେ ଥରେ ମୋ ଜୀବଧନ,
ଅଯାଚିତ ସେନେହେ ମୋହିଲ ମନ ।
ଘାରିଲ ଅଙ୍ଗ ଅବା ଅନଙ୍ଗ ତା'ର
ଗଣ୍ଡେ ମୋ ଚୁମ୍ବ ଦେଲା ବାରକୁ ବାର ।
ଅକୁହା ଶିହରଣେ ପୂରିଲ ଅଙ୍ଗ,
ଭୁଣିତ ନିଦ୍ରା ମୋର ହୋଇଲା ଭଙ୍ଗ ।
ନିଦ୍ରାଗତ ବୋଲି ମୁଁ କଲି ଛଳନା
ନ ଜାଣିଲା ମୋ ଛନ୍ଦ ଶାନ୍ତଲଳନା ।
ବକ୍ଷେ ମୋ ବକ୍ଷ ତାର ସରାଗେ ରଖି
ଶୟନ କଲା ସ୍ନେହେ ମୋ ପ୍ରିୟ ସଖୀ ।
ଛନ୍ଦିଲା ଭୁଜ ମୋର ଗଳାରେ ନେଇ
ଅକୁହା ପୁଲକ ମୋ ଶରୀରେ ଦେଇ ।
ଥାପିଲା କର ମୋର ବକ୍ଷରେ ସନ୍ଧୁଁ
ଧଇର୍ଯ୍ୟ ବନ୍ଧ ମୋର ଭାଜିଲା ତହୁଁ ।
ମାତିଲି ରତିରସେ ହରଷ ମନେ
ଲାଜେ ପଡ଼ିଲା ମୋର ସଜନି କ୍ଷଣେ ।
ପୁଛନ୍ତେ ସନ୍ଧି ! ଏ କି ତୋ ରୀତି ଆଜ,
କଳନା ନ ହେଲା ମୋ ଲଳନା-ଲାଜ । ୪

ବରଷକର ପୂର୍ଣ୍ଣ ବରଷ ପରେ,
ଭେଟିଲି ସଜନୀକୁ ଯେବେ ମୋ ଘରେ ।
ପ୍ରଣୟ-ପାଗଳିନୀ ମୋହର ବନା,
ତୁଟିଛି ତନୁକାନ୍ତି ବିଷାଦଲୀନା ।
ନ ଫୁଟେ ମୁଖେ ତା'ର ହରଷ ଆଉ,
ସହି ନ ପାରି ଗୁରୁ ବିରହ-ଦାଉ ।
ଶୁଖିଛି ସଜ ସରସିଜ ବଦନ
ଶୂନ୍ୟ ମଣିଛି ତା'ର ପିତୃ-ସଦନ ।
ତୁଟିଛି କଳେବରୁ ସୁଷମା-ରଙ୍ଗ,
ମୋର ପ୍ରଣୟ ବିନା କୃଶ ତା ଅଙ୍ଗ ।
କ୍ଷୀଣ ତା' କଣ୍ଠସ୍ୱର ଦୁର୍ବଳ ତନୁ,
ଦଇବ ହରିଛି ତା' ହରଷ ମନୁଁ ।
ଦେଖି ସହସା ମୁଁ ସେ ଉଠିଲ ଥରି,
ବସାଇଲ ମୋ ପାଶେ ଭୁଜକୁ ଧରି ।
ବୁହାଇ ଝର ଝର ନୀର ନୟନୁଁ,
ପୁଚ୍ଛିଲ, "କୁହ କେମନ୍ତେ ଭୁଲିଲ ମନୁଁ ।
ଜନନୀ ମୋର ସିନା କରିଲା ଦୋଷ,
ମୋ ପ୍ରତି କିଆଁ ତୁମେ ବହିଲ ରୋଷ" । ୬ ।

ବିରହ ଶାପ ମୋର ମୋଚନ ପରେ,
ପ୍ରିୟା ମଣ୍ଡନ କଲ୍ ସଦନ ଖରେ ।
          ମଧୁର ମିଳନରେ ବିତିଲ୍ ଦିନ,
          ପ୍ରିୟା ପ୍ରଣୟେ ସଦା ହେଲି ମୁଁ ଲୀନ ।
ଦୁଇ ବରଷ ଗଲ୍ ଏସନ ବିତି,
ସଜନ ମେଳେ ନିଶି ପୁହାଏ ନିତି ।
          ଉଚ୍ଚଶିକ୍ଷାରେ ମୋର ବଳିଲ୍ ମନ,
          ପୁଣି ପ୍ରବାସୀ ମୁହିଁ ହେବ ବନ୍ଧନ ।
ଶୁଣି ବିଷାଦେ ପ୍ରିୟା କହିଲ୍ ହେଜ,
ଏ ସୁବାକାଳେ ମୋତେ ଯାଉଛ ତେଜ ।
          କପଟ ବଞ୍ଚିବ ମୁଁ ରଜନୀ ଘୋର,
          ପୁଣି ପଡ଼ିଲ୍ ଦୁଃଖ କରମେ ମୋର ।
କାହା ପଦେ ମୋ ପଦ ଥାପି ସରାଗେ,
ଶୟନ କରିବ ମୁଁ କୁହ ମୋ ଆଗେ ।
          ଏତେ ନିଷ୍ଠୁର କିଆଁ ହେଲ ମୋ ପ୍ରତି,
          ପରବାସୀ ହେବାକୁ ବଳିଲ୍ ମତି ।
ଝର ଝର ଝରାଇ ନୀର ନୟନୁଁ,
ବିଦାୟ ଦେଲ୍ ପ୍ରିୟା—ନ ଯାଏ ମନୁଁ । ୭ ।

ସପତ ସ୍ମୃତି ମୋ ମାନସେ ଆସି,
ଚଳଚ୍ଚିତ୍ର ସମାନ ଯାଏ ଗୋ ଭାସି ।
ନ ପାରିବ ପାଶୋରି କେବେ ତା ମନୁଁ,
ଥିବାଯାଏ ଜଗତେ ଏ ମର ତନୁ ।
ସୁଖ ଦୁଃଖ ଭରା ଏ ଜଗତ ସିନା,
ସୁଖ ନ ପଡ଼େ ଜଣା କଷଣ ବିନା ।
ଅନ୍ଧାର ପରେ ଯଥା ଆଲୋକ ଆସେ,
ମିଳନ ବିରହର କଷଣ ନାଶେ ।
କ୍ଷଣେ ଦୁଃଖ ମୋ ଚିତ୍ତ ଘାରଇ ଯେବେ,
ଆଶା ଆଲୋକ ପୁଣି ଦିଶଇ ତେବେ ।
ଆଶା-ନିରାଶା ମଧ୍ୟେ କରେ ମୁଁ ଗତି,
ଆଶ୍ରୟ ଏକା ପ୍ରଭୁ ଜଗତପତି ।
ପିତାମହ ମୋ ବାଲ୍ୟଗୁରୁ ମୋହର,
ଧ୍ୟାୟି ଭକତିଭରେ ତାଙ୍କ ପୟର ।
ରଚନା କରେ କାବ୍ୟ-କବିତା ଚୟ,
ତାଙ୍କ ହେତୁ କବିତ୍ୱ ମୋର ଉଦୟ । ୮ ।

---



ଜନ୍ମ—ତା ୩୧-୧-୧୯୩୦—ଜନ୍ମସ୍ଥାନ— ସ୍ୱଚ୍ଛସଲିଳା, କଳନାଦିନୀ 'ବିରୂପା' ତଟବର୍ତ୍ତୀ ପୁରାଣ ଓ ଇତିହାସପ୍ରସିଦ୍ଧ ପୀଠ ଚଉଦ୍ୱାର, ଜି: କଟକ—ପିତାମହ ତଥା ବାଲ୍ୟଗୁରୁ ପଣ୍ଡିତ କୃପାସିନ୍ଧୁ କରଙ୍କର ସ୍ନେହରେ ଲାଳିତପାଳିତ—ପିତାମହଙ୍କ ସ୍ୱର୍ଗବାସ ପରେ ଗ୍ରାମଜୀବନ ଦୁଃଖମୟ—ଅର୍ଥାଭାବ ହେତୁ ଦୀର୍ଘ ବାରବର୍ଷ ଶିକ୍ଷା କ୍ଷେତ୍ରରେ ବାଧାପ୍ରାପ୍ତ—ଯୁବତୀପ୍ରିୟାର ସାମୟିକ ବିରହରେ ହୃଦୟର ପ୍ରେମଫଲ୍ଗୁ "ବିରହ-ବାନ୍ଧବୀ" କବିତାବଳୀ ମାଧ୍ୟମରେ ପ୍ରବାହିତ—କଳିଙ୍ଗ ଭାରତୀର ପ୍ରତିଷ୍ଠାତା ଭକ୍ତକବି ସ୍ୱର୍ଗତ ବଛନ୍ଦଚରଣ ପଟ୍ଟନାୟକଙ୍କର "ଦରଦୀକବି" ପଦବୀ ପ୍ରଦାନ—ଭୂସ୍ୱର୍ଗ କାଶ୍ମୀର ଓ ଦେବପୂତ ବ୍ରଜଧାମ ସମେତ ସମଗ୍ର ଭାରତ, ନେପାଳ ଓ ସିଂହଳ ପର୍ଯ୍ୟଟନ ।

ପ୍ରକାଶିତ ପୁସ୍ତକାବଳୀ—ବିରହ ବାନ୍ଧବୀ, ମିଳନ ମାଧୁରୀ, ରଜରେଣୁ, ପଲ୍ଲୀପ୍ରୀତି, ଋତୁସଂହାର, ନୀତିନିର୍ଝରିଣୀ, ସପ୍ତାରଣ୍ୟ, ସଟୀକ ଯମକରାଜ ଚଉତିଶା, ଗୀତଗଣିତ, ଅଞ୍ଜଳି, ମଣିରତ୍ନମାଳା, ତୈଳତଣ୍ଡୁଳ, ହଂସଦୂତ, ଶ୍ରୀକପାଳେଶ୍ୱର ଚଉତିଶା, ଦେଶଦର୍ଶନ ଓ କଳ୍ପନାକୁଞ୍ଜେ ।

ମୁଦ୍ରଣ ପ୍ରତୀକ୍ଷାରେ—ରଘୁବଂଶ, କୁମାରସମ୍ଭବ, ନଳୋଦୟ, ମାଟି ଲୁହେଁ ମା ଓ ଅଭାଗିନୀର ଅଶ୍ରୁ ।